ଚ୍ଛେଦନାର୍ଥଂ କୁଶତ୍ରୟଂ ପବିତ୍ର କରଣାର୍ଥଂ ସାଗ୍ରମନନ୍ତର୍ଗର୍ଭି-
କୁଶପତ୍ରଦ୍ୱୟଂ ପ୍ରୋକ୍ଷଣୀପାତ୍ରଂ ଆଜ୍ୟସ୍ଥାଲୀ ଚରୁସ୍ଥାଲୀ
ସମ୍ମାର୍ଜନ କୁଶାଃ ଉପଯମନକୁଶାଃ ପ୍ରାଦେଶମିତ ପଲାଶ
ସମିଧସ୍ତିସ୍ରଃ ସ୍ରୁବଃ ଆଜ୍ୟଂ ଷଟ୍‌ପଞ୍ଚାଶଦୁତ୍ତର ଯଜମାନ
ମୁଷ୍ଟିଶତଦ୍ୱୟାବଚ୍ଛିନ୍ନାନ୍ନତଣ୍ଡୁଲପୂର୍ଣ୍ଣପାତ୍ରଂ ଚର୍ବର୍ଥାସ୍ତଣ୍ଡୁଲାଃ
ଏତାନି ପବିତ୍ର ଚ୍ଛେଦନ କୁଶାନାଂ ପୂର୍ବପୂର୍ବଦିଶି କ୍ରମେଣା
ସାଦନୀୟାନି ତତଃ ପବିତ୍ରଚ୍ଛେଦନ କୁଶୈ ର୍ଯଜମାନ
ପ୍ରାଦେଶମିତ ପବିତ୍ରଚ୍ଛେଦନଂ ସପବିତ୍ର କରେଣ ପ୍ରଣୀ-
ତୋଦକଂ ନିଃ ପ୍ରୋକ୍ଷଣୀପାତ୍ରେ ନିଧାୟ ଦ୍ୱାଭ୍ୟାମନା
ମିକାଂଗୁଷ୍ଠାଭ୍ୟାମୁତ୍ତରାଗ୍ରେ ପବିତ୍ରେ ଗୃହୀତ୍ୱା ତ୍ରିରୁତ୍ପବ-
ନଂ ତତଃ ପ୍ରୋକ୍ଷଣୀପାତ୍ରଂ ସବ୍ୟହସ୍ତେନ ଗୃହୀତ୍ୱା ଦକ୍ଷି
ଣାନାମିକାଂଗୁଷ୍ଠାଭ୍ୟାଂ ପବିତ୍ରେ ଗୃହୀତ୍ୱା ତ୍ରିରୁଦ୍ଦିଂଗନଂ

---

## ଅଥ ଅନ୍ନ ପ୍ରାଶନ ।

ଏହିକର୍ମ ଷଷ୍ଠ ମାସରେ ଦନ୍ତ ତାର୍ ଫୁଟିଥିବା ଦିବସରେ ପିତା ସ୍ନାନକରି ଶୁଚିମନ୍ତ ହୋଇ ଶୁକ୍ଳ ବସ୍ତ୍ର ଦ୍ୱୟ ପରିଧାନ କରିବ ତତ୍ପରେ ସୂତିକା ଗୃହରେ କୁଶଣ୍ଡି କରିବ ।

ତହିଁର କ୍ରମ, ଯଥା

କୁଶମାନଙ୍କରେ, ଏକହସ୍ତ ପରିମିତ ଚତୁର କୋଣିଆ ଭୂମିକୁ ପରିଷ୍କାର ( ପରିସମୋହନ ) କରି ସେକୁଶମାନଙ୍କୁ ଐଶାନ୍ୟ କୋଣରେ ପକାଇ ଗୋମୟୋଦକରେ ଲେପନ କରିବ । ଅଉ ସ୍ଫୂଚ ବା ସ୍ରୁବରେ ପ୍ରାଦେଶ ମାତ୍ର ଭୂମିକୁ ଅଗ୍ନିଙ୍କ ଉତ୍ତ-ରଭାଗରେ ପଶ୍ଚିମ ଦିଗରୁ ପୂର୍ବ ଦିଗକୁ ଅଗ୍ରକରି ତିନିଗୋଟି ରେଖା ଖନନ କରିବ ଏବଂ ଅନାମିକା, ଅଙ୍ଗୁଷ୍ଠ ଏ ଦୁଇ ଅଙ୍ଗୁଳି

ତତଃପ୍ରଣୀତୋଦକେନ ପ୍ରୋକ୍ଷଣୀ ପାତ୍ରମଭ୍ୟୁକ୍ଷ୍ୟ ପ୍ରୋକ୍ଷଣୀ ଜଲେନାସାଦିତ ବସ୍ତୁସେଚନଂ ଅଗ୍ନିପ୍ରଣୀତ- ୟୋର୍ମଧ୍ୟେ ପ୍ରୋକ୍ଷଣୀପାତ୍ରଂ ନିଦଧ୍ୟାତ୍ ତତଃଆଜ୍ୟସ୍ଥାଲ୍ୟା ମାଜ୍ୟନିରୂପ୍ୟ ପ୍ରଣୀତୋ ଦକେନ ତଣ୍ଡୁଲାନ୍ ପ୍ରକ୍ଷ୍ୟାଲ୍ୟ ଚରୁପାତ୍ରେ ପ୍ରଣୀତୋଦକଂଦତ୍ତ୍ୱା ତତ୍ର ତଣ୍ଡୁଲାନ୍ ପ୍ରକ୍ଷିପ୍ୟ ସ୍ୱୟଂଚରୁଂ ଗୃହୀତ୍ୱା ବ୍ରହ୍ମାଗୃହ୍ୟଂ ବହ୍ନା ବୁତ୍ତରତଶ୍ଚରୁଂ- ଦକ୍ଷିଣତଃ ଆଜ୍ୟଂ ନି ଦଧ୍ୟାତ୍ ତତଃ ସିଦ୍ଧେଚରୌ ତୃଣାଦି ପ୍ରଜ୍ୱାଲ୍ୟ ଉଭୟୋରୁପରି ପ୍ରଦକ୍ଷିଣଂ ଭ୍ରାମୟିତ୍ୱା ବହ୍ନୌ- ତତ୍ପ୍ରକ୍ଷେପଃ ତତସ୍ତିଃ ସ୍ରୁବପ୍ରତପନଂ ସମାର୍ଜନଂ କୁଶାନା- ମଗ୍ରୈରନ୍ତରତୋ ମୂଲୈର୍ବାହ୍ୟତଃ ସ୍ରୁବଂ ସମ୍ମୃଜ୍ୟପ୍ରଣୀ- ତୋଦକେନାଭ୍ୟୁକ୍ଷ୍ୟ ପୁନସ୍ତିଃ ପ୍ରତପ୍ୟ ଦକ୍ଷିଣତୋ ନି- ଦଧ୍ୟାତ୍ ତତଆଜ୍ୟମଗ୍ନି ତଶ୍ଚରୋଃ ପୂର୍ବେଣାନୀୟୋତ୍ତରେଣ ତ୍ୱା

---

ରେ ଗଚ୍ଛିତ ମୃତ୍ତିକାକୁ ବାହାରକର ସେଗୁଡ଼ିକୁ ଜଳଦ୍ୱାର୍ ସେଚନ କରବ । ତଦନନ୍ତର କାଂସ୍ୟ ପାତ୍ରେ ଅଗ୍ନି ଅଣି ପ- ଶ୍ଚିମକୁ ମୁଖକରାଇ ତାହା କୁଣ୍ଡରେ ସ୍ଥାପନ କରବ । " ଓଁ ଅଦ୍ୟ ଋତ୍ୱିଜ୍ୟ ଅନ୍ନ ପ୍ରାଶନ " ବାକ୍ୟକୁ ପଢ଼ି ବ୍ରହ୍ମାଙ୍କୁ ବରଣ କରିବ "ଓଁ ବୃତୋଽସ୍ମି " ବୋଲି ବ୍ରହ୍ମାକହିବେ । ତତ୍ପରେ ଯଜମାନ " ଯଥା ବହିତ କର୍ମକୁରୁ " ବୋଲି କହିସାରିଲାରୁ "ଓଁ କର ବାଣୀତି " ବୋଲି ବ୍ରହ୍ମା କହିବେ ।

ଅନନ୍ତର ଯଜମାନ ଅଗ୍ନିର ଦକ୍ଷିଣପାଖରେ ଶୁଦ୍ଧଆସନ ପକାଇ ତଦୁପରି ତନିଗୋଟି ପୂର୍ବାଗ୍ରୁ ଅଗ୍ରରେ ଥୋଇ ଥିବାକୁଶରଖି ବ୍ରହ୍ମାଙ୍କୁ ଅଗ୍ନି ପ୍ରଦକ୍ଷିଣ କରାଇ ଉତ୍ତରମୁଖକରି ବସାଇବ ଏବଂ " ଅଗ୍ନିନ୍ ଅନ୍ନପ୍ରାଶନ ହୋମକର୍ମଣିତ୍ୱଂମେବ୍ରହ୍ମାଭବବୋଲି ବ୍ରହ୍ମାଙ୍କୁକହିବ ଏହାଶୁଣି " ଓଁ ଭବାନୀତ ,, ବୋଲି ବ୍ରହ୍ମାକହିବେ ତତ୍ପରେ ପ୍ରଣୀ-

ମନସାଧ୍ୟାତ୍ଵା ତୁଷ୍ଣୀମଗ୍ନୌଘୃତାକ୍ତାଃ ସମିଧସ୍ତିସ୍ରଃ ପ୍ରକ୍ଷିପେତ୍
ତତଉପଯମନସ୍ୟ ସପବିତ୍ରପ୍ରୋକ୍ଷଣ୍ୟୁଦକେନ ପ୍ରଦକ୍ଷିଣକ୍ର-
ମେଣାଗ୍ନିଂ ପର୍ଯ୍ୟୁକ୍ଷ୍ୟ ପ୍ରଣୀତାପାତ୍ରେ ପବିତ୍ରେନିଧାୟ
ବ୍ରହ୍ମଣାନ୍ଵାରବ୍ଧଃ ପାତିତ ଦକ୍ଷିଣଜାନୁଃସମିଦ୍ଧତମେଽଗ୍ନୌ ଜୁହୁ-
ୟାତ୍ ତତ୍ରପ୍ରଥମାହୁତି ଚତୁଷ୍ଟୟେ ତତ୍ତଦାହୁତ୍ୟନନ୍ତରଂ
ସ୍ରୁବାବସ୍ଥିତହୁତଶେଷସ୍ୟ ପ୍ରୋକ୍ଷଣୀପାତ୍ରେ ପ୍ରକ୍ଷେପଃ ଓଁ
ପ୍ରଜାପତୟେସ୍ଵାହା ଇଦଂପ୍ରଜାପତୟେ ଇତିମନସା ଓଁ ଇନ୍ଦ୍ରା-
ୟସ୍ଵାହା ଇଦମିନ୍ଦ୍ରାୟ ଇତ୍ୟାଘାରୌ ଓଁ ଅଗ୍ନୟେସ୍ଵାହା
ଇଦମଗ୍ନୟେ ଓଁ ସୋମାୟ ସ୍ଵାହା ଇଦଂସୋମାୟ ଇତ୍ୟାଜ୍ୟ-
ଭାଗୌ ତତୋଽନନ୍ଵାରବ୍ଧେନ ସାଧାରଣା ସାଧାରଣାହୁତ
ହ୍ଵୟଂ ତତ୍ରପ୍ରଥମାହୁତିମନ୍ତ୍ରଃ ଓଁଦେବୀଂବାଚମଜନୟନ୍ତ ଦେ-

---

ଧ୍ୟାନକରି ମୌନଭାବରେ ଘୃତମିଶ୍ରିତ ତୋ ୩ଟି ସମିଧ ଅଗ୍ନିରେ
ପକାଇବ ତପରେ ଆସନରେବସି ପବିତ୍ରଯୁକ୍ତ ପ୍ରୋକ୍ଷଣୀ ଜଳକୁ
ଅଗ୍ନିର ଚତୁର୍ଦ୍ଦିଗରେ ପ୍ରଦକ୍ଷିଣକରିଇ ତାହ: ଅଗ୍ନିରେ ଦେନେ
ଜରିବ ପ୍ରଣୀତାପାତ୍ରରେ ପବିତ୍ରଦ୍ଵୟକୁ ସ୍ଥାପନ କରି ବ୍ରହ୍ମାଙ୍କଦ୍ଵାରା ସ୍ପର୍ଶି-
ହୋଇ ଦକ୍ଷିଣ ଜାନୁ ପକାଇ ପ୍ରଜ୍ଵଳିତ ଅଗ୍ନିରେ ହୋମ କରିବ ।
ଏହି ହୋମର ପ୍ରଥମ ଚାରିଆହୁତି ଦେଲାବେଳେ ପ୍ରତ୍ୟେକ ଅହୁତି
ପ୍ରାନ୍ତରେ ( ସଂସ୍ରବ ) ସ୍ରୁବରେ ଥିବା ଅବଶିଷ୍ଟ ଘୃତକୁ ପ୍ରୋକ୍ଷଣୀ
ପାତ୍ରରେ ପକାଇବ । " ଓଁ ପ୍ରଜାପତୟେ ସ୍ଵାହା ଇଦଂ ପ୍ରଜା
ପତୟେ " " ଓଁ ଇନ୍ଦ୍ରାୟସ୍ଵାହା ଇଦମିନ୍ଦ୍ରାୟ " ଏହାବୋଲି ଅ-
ଘାର ଦ୍ଵୟଦେବ । " ଓଁ ଅଗ୍ନୟେ ସ୍ଵାହା ଇଦମଗ୍ନୟେ " " ସୋ-
ମାୟ ସ୍ଵାହା ଇଦଂ ସୋମାୟ " ଏହାବୋଲି ଆଜ୍ୟଭାଗଦ୍ଵୟଦେବ
ତପରେ ବ୍ରହ୍ମାଙ୍କୁ ସ୍ପର୍ଶି ନ କରି ସାଧାରଣ ଅହୁତିଦ୍ଵୟ ଦେବ
" ଓଁ ଦେବୀଂ ବାଚ " ଏହିମନ୍ତ୍ରରେ ଇଦଂ ବାଚେ " ବୋଲି ପ୍ରଥମ
ଅହୁତି ଦେବ । ଓଁ ଦେବୀଂ ବାଚଂ , ଓଁ ବାଚେଜୋ , ଏହି

ବାସ୍ତାଂ ବିଶ୍ୱରୂପାଃ ପଶବୋବଦଂନ୍ତି ସାନୋମଂ ଦ୍ରେଷମୂର୍ଜ୍ଜଂ
ଦୁହାନାଧେନୁର୍ବାଗସ୍ମାନୁପସୁଷ୍ଟୁତୈତୁସ୍ୱାହା ଇଦଂବାଚେ
ହିଁଘୀସ୍ଥା ହୁତସ୍ତୁ ଓଁ ଦେବୀଂବାଚମିତ୍ୟାଦ୍ୟମଂତ୍ରଃ ଓଁ ବାଜୋ
ନୋଅଦ୍ୟପ୍ରସୁବାତିଦାନଂ ବାଜୋଦେବା ଋତୁଭିଃକଳ୍ପୟାତି
ବାଜୋହିମାସର୍ବବୀରଂ ଜଜାନବିଶ୍ୱାଆଶା ବାଜପତିର୍ଜ୍ଜୟେୟଂ
ସ୍ୱାହା ଇଦଂବାଚେବାଜାୟ ଇତିମଂତ୍ରାଭ୍ୟାଂ ତତଃସ୍ଥାଲୀ
ପାକେନାହୁତିଚତୁଷ୍ଟୟଂ ଓଁ ପ୍ରାଣେନାନ୍ନମଶୀୟସ୍ୱାହା ଇଦଂ
ପ୍ରାଣାୟ ଓଁ ଅପାନେନଗଂଧମଶୀୟସ୍ୱାହା ଇଦମପାନାୟ
ଓଁ ଚକ୍ଷୁଷାରୂପାଣ୍ୟଶୀୟସ୍ୱାହା ଇଦଂଚକ୍ଷୁଷେ ଓଁ ଶ୍ରୋତ୍ରେ
ଣଯଶୋଽଶୀୟସ୍ୱାହା ଇଦଂଶ୍ରୋତ୍ରାୟ ତତୋବ୍ରହ୍ମଣାନ୍ୱାର
ବ୍ଧ କର୍ତ୍ତୃକୋହୋମଃ ତନ୍ନତତ୍ଦାହୁତ୍ୟନଂତରଂସ୍ରୁବା ବସ୍ଥିତ
ହୁତଶେଷଦ୍ରବ୍ୟସ୍ୟପ୍ରୋକ୍ଷଣୀପାତ୍ରେପ୍ରକ୍ଷେପଃ ତତୋବାଜ୍ୟ
ସ୍ଥାଲୀପାକାଭ୍ୟାଂ ସ୍ୱିଷ୍ଟକୃତଂ ଓଁ ଅଗ୍ନୟେସ୍ୱିଷ୍ଟକୃତେସ୍ୱାହା

---

ମନ୍ତ୍ରରେ ଇଦଂବାଜାୟ ବୋଲି ସାଧାରଣ ଆହୁତି ଦେବ ତତ୍ପରେ
ଚତୁର୍ଦ୍ଧାର ଘୃତ ଆହୁତି ଦେବ ଯଥା;

୧ — ଓଁ ପ୍ରାଣେନାନ୍ନ ମଶୀୟ ସ୍ୱାହା ଇଦଂ ପ୍ରାଣାୟ ।
୨ — ଓଁ ଅପାନେନ ଗଂଧମଶୀୟସ୍ୱାହା ଇଦମପାନାୟ
୩ — ଓଁ ଚକ୍ଷୁଷାରୂପାଣ୍ୟଶୀୟ ସ୍ୱାହା ଇଦଂ ଚକ୍ଷୁଷେ
୪ — ଓଁ ଶ୍ରୋତ୍ରେଣ ଯଶୋଽଶୀୟସ୍ୱାହା ଇଦଂ ଶ୍ରୋତ୍ରାୟ

ତଦନନ୍ତର ବ୍ରହ୍ମାଙ୍କୁ ସ୍ପର୍ଶକରି ଯଜମାନ ହୋମକରିବ ଏଠାରେ ପ୍ରତ୍ୟାହୁତିଦେଇ ସାରିଲାଉତ୍ତାରୁ ସ୍ରୁବରେଥିବା ଅବଶିଷ୍ଟଘୃତ ପ୍ରୋକ୍ଷଣୀପାତ୍ରରେ ପକାଇବ । ତତ୍ପରେ ଆଜ୍ୟ ଏବଂ ଚରୁ ଏଦୁଇ ଦ୍ରବ୍ୟରେ ସ୍ୱିଷ୍ଟକୃତଙ୍କ ଓଁ ଅଗ୍ନୟେ ସ୍ୱିଷ୍ଟକୃତେସ୍ୱାହା ଇଦମଗ୍ନୟେ

ଇଦମଗ୍ନୟେ ସ୍ୱିଷ୍ଟକୃତେ ଭତ୍ତଅନ୍ତେନ ଓଁ ଭୂଃସ୍ୱାହା
ଇଦମଗ୍ନୟେ ଓଁ ଭୁବଃସ୍ୱାହା ଇଦଂବାୟବେ ଓଁ ସ୍ୱଃସ୍ୱାହା
ଇଦଂସୂର୍ଯ୍ୟାୟ ଏତାମହାବ୍ୟାହୃତୟଃ ଓଁ ତ୍ୱନ୍ନୋଅଗ୍ନେବରୁ
ଣସ୍ୟବିଦ୍ୱାନ୍ ଦେବସ୍ୟହେଡୋ ଅବୟାସିସୀଷ୍ଠାଃ ଯଜିଷ୍ଠୋ
ବହ୍ନିତମଃଶୋଶୁଚାନୋବିଶ୍ୱାଦ୍ୱେଷାଂସି ପ୍ରମୁମୁଗ୍ଧ୍ୟସ୍ମତ୍ସ୍ୱାହା
ଇଦମଗ୍ନିବରୁଣାଭ୍ୟାଂ ଓଁ ସତ୍ୱନ୍ନୋଅଗ୍ନେ ବମୋଭବୋତୀ
ନେଦିଷ୍ଠୋ ଅସ୍ୟାଉଷସୋବ୍ୟୁଷ୍ଟୌ ଅବୟକ୍ଷ୍ୱନୋ ବରୁଣଂର
ରାଣୋବୀହିମୃଡ଼ୀକଂ ସୁହବୋନଏଧିଃସ୍ୱାହା ଇଦମଗ୍ନୀବରୁ-
ଣାଭ୍ୟାଂ ଓଁ ଅୟାଶ୍ଚାଗ୍ନେସ୍ୟନଭିଶସ୍ତିପାଶ୍ଚ ସତ୍ୟ ମିତ୍ୱମୟାଅସି
ଅୟାନୋୟଜ୍ଞଂବହାସ୍ୟ ୟାନୋଧେହିଭେଷଜଂସ୍ୱାହା ଇଦ-
ମଗ୍ନୟେ ଓଁ ଯେତେଶତଂ ବରୁଣଯେସହସ୍ରଂ ଯଜ୍ଞିୟାଃ
ପାଶାବିତତାମହାନ୍ତଃ ତେଭିର୍ନୋଅଦ୍ୟ ସବିତୋତ ବିଷ୍ଣୁର୍ବି-
ଶ୍ୱେ ମୁଞ୍ଚନ୍ତୁମରୁତଃସ୍ୱର୍କାଃସ୍ୱାହା ଇଦଂବରୁଣାୟସବିତ୍ରେ
ବିଷ୍ଣବେ ବିଶ୍ୱେଭ୍ୟୋ ଦେବେଭ୍ୟୋ ମରୁଦ୍ଭ୍ୟଃସ୍ୱର୍କେଭ୍ୟଃ

---

ସ୍ୱିଷ୍ଟକୃତେ ଏହିମନ୍ତ୍ରରେ ହୋମକରିବ । ତହିଁଉତ୍ତାରୁ ଘୃତଦ୍ୱାରା ହୋମକରିବ ଯଥା ଓଁ ଭୂଃସ୍ୱାହା ଇଦମଗ୍ନୟେ । " ଓଁ ଭୁବଃସ୍ୱାହା ଇଦଂବାୟବେ " " ଓଁ ସ୍ୱଃସ୍ୱାହା ଇଦଂ ସୂର୍ଯ୍ୟାୟ " ଏମାନଙ୍କୁ ମହାବ୍ୟାହୃତି ବୋଲାଯାଏ । " ଓଁ ତ୍ୱନ୍ନୋଅଗ୍ନେ " ଏହାବୋଲି ଅଗ୍ନିବରୁଣଙ୍କୁ ହୋମକରିବ " ଓଁ ସତ୍ୱନ୍ନୋଅଗ୍ନେ " ଏହିମନ୍ତ୍ରରେ " ଇଦମଗ୍ନିବରୁଣାଭ୍ୟାଂ " ବୋଲି ହୋମକରିବ " ଓଁ ଅୟାଶ୍ଚାଗ୍ନେ " ଏହାବୋଲି ଅଗ୍ନିଙ୍କୁ ହୋମକରିବ । " ଓଁ ଯେତେଶତଂ- ମନ୍ତ୍ରପାଠାନ୍ତେ ଇଦଂବରୁଣାୟ, ସବିତ୍ରେ, ବିଷ୍ଣବେ, ବିଶ୍ୱେଭ୍ୟୋ ଦେବେଭ୍ୟୋ, ମରୁଦ୍ଭ୍ୟଃ, ସ୍ୱର୍କେଭ୍ୟଃ ବୋଲି ହୋମକରିବ ତତ୍ପରେ

ଓଁ ଉଦୁତ୍ତମଂ ବରୁଣପାଶମସ୍ମଦବାଧମଂ ବିମଧ୍ୟମଁ ଶ୍ରଥାୟ ଅଥାବୟମାଦିତ୍ୟବ୍ରତେତବାନାଗସୋ ଅଦିତୟେ ସ୍ୟାମ-ସ୍ୱାହା ଇଦଂବରୁଣାୟ ଇତିସର୍ବପ୍ରାୟଶ୍ଚିତ୍ତଂ ଓ ପ୍ରଜାପତ-ୟେସ୍ୱାହା ଇଦଂପ୍ରଜାପତୟେ ଇତିମନସା ଇତିପ୍ରାଜାପତ୍ୟଂ ଅଥସଂସ୍ରବପ୍ରାଶନଂ ତତଆଚମ୍ୟ ଓ ମଦ୍ୟକୃତୌ ତଦନ୍ନପ୍ରାଶନ ହୋମକର୍ମଣି କୃତାକୃତା ବେକ୍ଷଣରୂପବ୍ରହ୍ମକର୍ମପ୍ରତିଷ୍ଠାର୍ଥି ମିଦଂପୂର୍ଣ୍ଣପାତ୍ରଂ ପ୍ରଜାପତିଦୈବତ୍ୟ ମମୁକଗୋତ୍ରାୟାମୁକ ଶର୍ମଣେ ବ୍ରାହ୍ମଣାୟ ବ୍ରହ୍ମଣେ ଦକ୍ଷିଣାଂତୁଭ୍ୟ ମହଂସଂପ୍ରଦ-ଦେ ଇତିଦକ୍ଷିଣାଂ ଦଦ୍ୟାତ୍ ଓଁ ସ୍ୱସ୍ତୀତି ପ୍ରତିବଚନଂ ତତଃ ପ୍ରଣୀତା ବିମୋକଃ ଓଁ ସୁମିତ୍ରିୟାନ ଆପଓଷଧୟଃସନ୍ତୁ ଇତିପଠିତ୍ୱା ପବିତ୍ରାଭ୍ୟାଂ ପ୍ରଣୀତାଜଳ ମାନୀୟ ଶେଚନଶିରଃ ସମ୍ମୃଜ୍ୟ ଓଁ ଦୁର୍ମିତ୍ରିୟାସ୍ତସ୍ମୈ ସନ୍ତୁ ଯୋସ୍ମାନ୍ଦ୍ୱେଷ୍ଟି ଯଂଚବୟଂ ଦ୍ୱିଷ୍ମଃ ଇତୈଶାନ୍ୟାଂପ୍ରଣୀତା ନ୍ୟୁବ୍ଜୀକରଣଂ ତତସ୍ତ-

---

• ଉଦୁତ୍ତମ ” ମନ୍ତ୍ରପଠନଶେଷରେ ଇଦଂବରୁଣାୟ ବୋଲି ହୋମକରିବ । ସର୍ବସ୍ୱାହାକୁ ପ୍ରାୟଶ୍ଚିତ୍ତହୋମବୋଲାଯାଏ ।

“ଓଁ ପ୍ରଜାପତୟେସ୍ୱାହା ଇଦଂପ୍ରଜାପତୟେ „ ଏହାପଢିମୌନ-ଭାବରେ ପ୍ରାଜାପତ୍ୟକରିବ ଅନନ୍ତର ସଂସ୍ରବ ପ୍ରାଶନଙ୍କର ଆଚମନ-ପୂର୍ବକ “ ଓଁ ଅଦ୍ୟକୃତ ଏତଦନ୍ନପ୍ରାଶନ „ ବାକ୍ୟପଢି ବ୍ରହ୍ମାଙ୍କୁ ଦକ୍ଷିଣାଦେବ „ ଓଁ ସ୍ୱସ୍ତୀତି ବୋଲି ବ୍ରହ୍ମାକହିବେ । ତତ୍ପରେ ପ୍ରଣୀ-ତାରେ ଅଚ୍ଛାଦିତ କରିଥିବା ପାତ୍ରକୁ ମୁକ୍ତ “ ଓଁ ସୁମିତ୍ରିୟାନ „ ମନ୍ତ୍ରପଢି ପବିତ୍ରକୁ ପ୍ରଣୀତାଜଳରେ ବୁଡ଼ାଇ ମସ୍ତକରେ ସେଚ-ନକରିବ ଓଁ ଦୁର୍ମିତ୍ରିୟାନ ମନ୍ତ୍ରବୋଲି ଐଶାନ୍ୟ କୋଣରେ ପ୍ରଣୀତାକୁ ଅଧୋମୁଖ କରିରଖିବ ତଦନନ୍ତର ସ୍ତରଣ କୁଶମାନଙ୍କ

ରଣ ବିଧିନା ବର୍ହିର୍ଭୂଥାପ୍ୟାଜ୍ୟେନାଭିଘାର୍ଯ୍ୟହସ୍ତେନୈବଜୁ-
ହୁୟାତ୍ ଓଁ ଦେବାଗାତୁ ବିଦୋଗାତୁଂ ବିତ୍ୱାଗାତୁମିତ
ମନସସ୍ପତଇମଂ ଦେବଯଜ୍ଞଂ ସ୍ୱାହା ବାତେଧାଃ ସ୍ୱାହା ଇତି
ବର୍ହିର୍ହୋମଃ ଅଥ ସର୍ବାନ୍ କଟୁମଧୁର ଲବଣାଦି ରସାନ୍
ସର୍ବାଣି ଚଶାଲ୍ୟାଦୀନ୍ୟନ୍ନାନି ଯଥା ସଂଭବ ମୁଦ୍ଧୃତ୍ୟ କ-ସ୍ମି
ନ୍ ଉତ୍ତମପାତ୍ରେ କୃତ୍ୱା କୃତସ୍ନାନାଦ୍ୟଲଂକାର୍ଦ୍ରସ୍ୟଭୋକ୍ତା-
ଲକ୍ଷ୍ମୀଂ ଓଁ ହଂତ ଇତମଂତ୍ରେଣବା ଅନ୍ନପତେନ୍ନସ୍ୟ ନୋ-
ଦେହ୍ୟ ନମୀବସ୍ୟ ଶୁଷ୍ମିଣଃ ପ୍ରଦାତାରଂତାରିଷ
ଉର୍ଜ୍ଜନୋଧେହି ଦ୍ୱିପଦେଚତୁଷ୍ପଦେ ଇତ୍ୟନେନ ବାପ୍ରାଶ-
ନୀୟଂ ଅଥକୁମାରସ୍ୟବାକ୍ ପ୍ରସରଣ କାମେନ ଭରଦ୍ୱାଜ
ମାଂସେନ ଅନ୍ନାଦ୍ୟକାମେନ କପିଞ୍ଜଲମାଂସେନମତ୍ସ୍ୟେ-
ନଜବନ କାମସ୍ୟ ଆୟୁଃକାମେନ କୃକସମାଂସେନ ବ୍ରହ୍ମବର୍ଚ୍ଚ
ସକାମେନ ଆଟିମାଂସଂ ସର୍ବଫଲକାମେନ କଥିତ ସର୍ବମାଂସଂ

---

ପରିସ୍ତରଣ ବିଧିରେ ଉଠାଇନେଇ ଘୃତରେ ବୁଡ଼ାଇବ "ଓଁ ଦେ-
ବାଗାତୁ" ଏହିମନ୍ତ୍ରବୋଲି ହୋମକରିବ ଏଥିଉତ୍ତାରୁ କଟୁ, ଅମ୍ଳ
ମଧୁରାଦି ଷଡ୍ରସ ଅତଶାଲ୍ୟନ୍ନ ପ୍ରଭୃତି ଯାହା ଯୋଗ୍ୟ ହେବ ସେ
ସବୁ ଗୋଟିଏ ଉତ୍ତମ ( ଉପଯୁକ୍ତ ) ପାତ୍ରରେ ରଖି ବାଳକକୁ ସ୍ନାନ
ଓ ଅଲଙ୍କାର ପରିଧାନ କରାଇ ମୌନଭାବରେ "ଓଁ ହନ୍ତ"
ଏମନ୍ତ୍ର ଅଥବା "ଅନ୍ନପତେ" ମନ୍ତ୍ରପଢି ଉପରେକ୍ତ ଦ୍ରବ୍ୟ ଭୋଜନ
କରାଇବ ଅନନ୍ତର ପିତା ବାଳକର ବାକ୍କାମୀ ହେଲେ ଭର
ଦ୍ୱାଜ ମାଂସ, ଅନ୍ନପ୍ରାପ୍ତେଚ୍ଛୁ ହେଲେ କପିଞ୍ଜଳ ( କରଣ୍ଡ ବା ମୟୂର
କିମ୍ବା ଚାତକର ) ମାଂସ, ଜବନ ଶୀଘ୍ର ଗାମୀ କାମୀ ହେଲେ ଯ-
ଥା ସମ୍ଭବ ମତ୍ସ୍ୟ, ଆୟୁଃ କାମୀ ହେଲେ କୃକଳସ ( ଜନ୍ତୁ
ବିଶେଷର ) ମାଂସ, ବ୍ରହ୍ମବର୍ଚ୍ଚସ୍କାମୀ ହେଲେ ଆଡ଼ୀ ( ପକ୍ଷୀ-

କପିଂଜଲଃ କଟୁଅ ଗୌରଡଡର ଉଡକେତଭ୍ ଅଗ୍ନିରେ ପେଷ୍ଟକମସ୍ୟାନାଂ ଭରଦ୍ୱାଜପ୍ରଭୃତୀ ନାମେକଦେଶଃ ପ୍ରାଶୟି- ତବ୍ୟଃ ତତ ଅଚମ୍ୟୋଥାୟ ଫଲମୂଲ ପୁଷ୍ପସନ୍ନ ଭି- ଘୃତେନ ସ୍ରୁବଂପର୍ପୂଯି. ଓଁ ମୂର୍ଦ୍ଧାନଂଦିବୋ ଅରତିଂପୃଥିବ୍ୟା ବୈଶ୍ୱାନର ମୃତ ଅଜାତମଗ୍ନିଂ କବିଂସମ୍ରାଜମତଥିଂ ଜ- ନାନା ମାସନ୍ନା ପାତ୍ରଂ ଜନୟଂତଦେବାଃ ସ୍ୱାହା ଇତମଂ- ତ୍ରେଣ ପୂର୍ଣାହୁତିଂଦଦ୍ୟାତ୍ ତତ ଉପ୍ରବଶ୍ୟ ଭସ୍ମାନୀ ଯୁଦକ୍ଷିଣା ନାମିକାଗ୍ର ଗୃହୀତ୍ୱାଭନ୍ତ୍ରନା ଓଁ ତ୍ର୍ୟାୟୁଷଂ ଜମଦଗ୍ନେ ଋତି ଲ- ଲାଟେ ଓଁ କଶ୍ୟପସ୍ୟ ତ୍ର୍ୟାୟୁଷମିତି ଗ୍ରୀବାୟାଂ ଓଁ ଯଦ୍ଦେ- ବେଷୁ ତ୍ର୍ୟାୟୁଷମିତି ଦକ୍ଷିଣ ବାହୁମୂଲେ ଓଁ ତନ୍ନୋଅସ୍ତୁ ତ୍ର୍ୟାୟୁଷମିତିହୃଦି ଅନେନୈବ କ୍ରମେଣ କୁମାର ଲଲାଟା

---

ଦଶେଷର ) ମାଂସ ସର୍ବଫଳକାମୀ ହେଲେ ଉପରୋକ୍ତ ସବ- ମାଂସ ଭୋଜନ କରାଇବ ଯେ ସବୁ ନ ମିଳିଲେ ତାହା ବଦଳରେ ପିଷ୍ଟକ ଭୋଜନ କରାଇବ ।

ଅଦ୍ୟ ଭରଦ୍ୱାଜ ମାଂସମାନଙ୍କ ଏକଦେଶକୁ ପ୍ରାଶନ କରା- ଇବ ତତ୍ପରେ ଆଚମନ କରି ଉତ୍ଥିତ ହୋଇ ଫଳ ମୂଳ ପୁଷ୍ପ- ଯୁକ୍ତ ଘୃତଦ୍ୱାରା ସ୍ରୁବକୁ ପୂର୍ଣ୍ଣକରି " ଓଁ ମୂର୍ଦ୍ଧାନଂ " ମନ୍ତ୍ରରେ ପୂର୍ଣ୍ଣାହୁତି ଦେବ । ତତ୍ପରେ ବହ୍ନି ଦକ୍ଷିଣ ଅନାମିକା ଅଙ୍ଗୁଳୀ ଅଗ୍ରରେ ଭସ୍ମଆଣି " ଓଁ ତ୍ର୍ୟାୟୁଷଂ " ପଢି ଲଲାଟେ, " କଶ ପସ୍ୟ ତ୍ର୍ୟାୟୁଷଂ " ବୋଲି ଗ୍ରୀବାରେ " ଯଦ୍ଦେବେଷୁତ୍ର୍ୟାୟୁଷଂ " ବୋଲି ଦକ୍ଷିଣ ବାହୁମୂଳରେ ଏବଂ " ତନ୍ନୋଅସ୍ତୁ ତ୍ର୍ୟାୟୁଷଂ " ବୋଲି ହୃଦୟରେ ତ୍ର୍ୟାୟୁଷ କରିବ ଏ ପରି ଏହି କ୍ରମରେ କୁମାରର ଲଲାଟାଦିରେ ତ୍ର୍ୟାୟୁଷ କରିବ । କେବଳ " ତନ୍ନୋ

ଯାବଦିତନ୍ମୋ ଇଦ୍ଧ୍ୟଗତନ୍ତ୍ରେ ଅସ୍ମିନ ବିଶେଷଃ ତତୋ
ଦୂର୍ବାକ୍ଷତାଦିଦାନଂ ବ୍ରାହ୍ମଣାନାଂ ଭୋଜନଂଚ ଇତ୍ୟନ୍ନପ୍ରାଶନଂ ୭

---

## ଅଥ ଚୂଡ଼ାକର୍ମ ।

ତତ ପୂର୍ଣ୍ଣେବର୍ଷେ ତୃତୀୟେ ବାଅସମ୍ପୂର୍ଣ୍ଣେ ଉପନୀତ୍ୟା
ସହ ବା ଯଥାଚାରଂ ଉଦଗୟନ ଆପୂର୍ଯ୍ୟମାଣପକ୍ଷେ ଶୁଦ୍ଧି
ସ୍ତ୍ରାଦିଦୋଷରହିତରିକ୍ତାଦିଦୋଷରହିତ ସୋମ ଗୁରୁ
ବୁଧ ଶୁକ୍ରାନ୍ୟତମବାରବିହିତନକ୍ଷତ୍ରସମନ୍ୱିତାୟାଂ ତଥୌ
କୃତ ନିତ୍ୟକ୍ରିୟୋ ଯଜମାନୋ ମାତୃପୂଜାଭ୍ୟୁଦ-
ୟିକାଦିକୃତ୍ୱା ମଣ୍ଡପେପରିଷ୍କୃତ ଭୂମୌ କୁଶଣ୍ଡିକା ମାର-

---

ଅସ୍ତୁ " ଠାରେ ଶତଂ ଅସ୍ତୁ ଏହିକ ପ୍ରଭେଦମାତ୍ର । ତହୁଁ ଉତ୍ତାରେଁ ଦୂର୍ବାକ୍ଷତାଦି ଦେଇ ବ୍ରାହ୍ମଣମାନଙ୍କୁ ଭୋଜନକରାଇବ ।

ଅନ୍ନପ୍ରାଶନ ସମାପ୍ତ ।

---

## ଚୂଡ଼ାକର୍ମ

ଏହିକର୍ମ ବର୍ଷ ପୂର୍ଣ୍ଣ ହେଲା ଉତ୍ତାରୁଁ ଅଥବା ଅସମ୍ପୂର୍ଣ୍ଣ ତୃତୀୟ ବର୍ଷରେ ଅଥବା ଉପନୟନ ସହିତରେ ଯଥାଚାର ଅନୁସାରେ ( ମୃଗାଦି ଷଷ୍ଠିରାଶିରେ ରହିଥିବେ ) ଶୁକ୍ଳପକ୍ଷଦେଖି ଶୁକ୍ରାସ୍ତ ଏବଂ ରିକ୍ତାଦି ଦୋଷରହିତ, ସୋମ, ଗୁରୁ, ବୁଧ, କିମ୍ବା ଶୁକ୍ରବାର ରେ ବିହିତ ନକ୍ଷତ୍ର ଯୁକ୍ତ ତିଥିରେ ସ୍ନାନାଦି ନିତ୍ୟକର୍ମ ସମାପନକରି ଯଜମାନ ମାତୃପୂଜା, ଅଭ୍ୟୁଦୟିକ ଶ୍ରାଦ୍ଧ କରି ମଣ୍ଡପରେ ବସି କୁଶଣ୍ଡି କରିବ ।

ଯଥା ;

ତେତ୍ର ତଦ୍ବିଧିଃ କୁଶୈର୍ହସ୍ତମିତାଂ ଭୂମିଂ ପରିସମୂହ୍ୟ ତା-
ନୈଶାନ୍ୟାଂ ପରିତ୍ୟଜ୍ୟ ଗୋମୟୋଦକେନୋ ପଲିପ୍ୟ
ସ୍ରୁବମୂଲେନ ପ୍ରାଦେଶମାତ୍ରଂ ତ୍ରିରୁଲ୍ଲିଖ୍ୟ ଉଲ୍ଲେଖନ କ୍ରମେଣା
ନାମିକାଙ୍ଗୁଷ୍ଠାଭ୍ୟା ମୃଦ୍ଧୃତ୍ୟ ବାରିଣାତଂ ଦେଶମଭ୍ୟୁକ୍ଷ୍ୟ
କାଂସ୍ୟପାତ୍ରେଣାଗ୍ନି ମାନୀୟ ପ୍ରତ୍ୟଙ୍ମୁଖ ମଗ୍ନେରୁପ ସମା-
ଧାନଂ କୃତ୍ୱା ତତୋଽଗ୍ନେଃ ପଶ୍ଚିମତୋ ଯଜମାନ ଦକ୍ଷି-
ଣତଃ ସ୍ନାପିତମହତବାସଃ ପରିଧାପ୍ୟ କୁମାରମଙ୍କେ କଥା-
ସ୍ୟ ମାତାଉପବିଶତି ତତଃ ପୁଷ୍ପଚନ୍ଦନ ତାମ୍ବୂଲ ବାସାଂସ୍ୟା-
ଦାୟ ଓଁ ଅଦ୍ୟ କର୍ତ୍ତବ୍ୟ ଚୂଡ଼ାକରଣ ହୋମ କର୍ମଣି କୃତା
କୃତା ବେକ୍ଷଣ ରୂପ ବ୍ରହ୍ମକର୍ମକର୍ତ୍ତୁମମୁକ ଗୋତ୍ରମମୁକ

---

ତଦ୍ ବିଧିଯଥା;

କୁଶମାନଙ୍କଦ୍ୱାରା ଏକହସ୍ତ ପରିମିତ ଭୂମିକୁ ମାର୍ଜ୍ଜନ କରି
ସେହି କୁଶମାନଙ୍କୁ ଐଶାନ୍ୟକୋଣରେ ପକାଇ ଗୋମୟ ଜଳରେ
ସେଭୂମିକୁ ଲେପନ କରିବ । ଉତ୍ତର ପାର୍ଶ୍ୱରେ ସ୍ରୁବ ମୂଳ
ଦ୍ୱାରା ପ୍ରାଦେଶ ପରିମିତ ତିନିଗୋଟି ରେଖା ଖନନ କରି
ଅନାମିକା ଓ ଅଙ୍ଗୁଷ୍ଠ ଅଙ୍ଗୁଳୀ ଦ୍ୱୟରେ ମୃତ୍ତିକା ବାହାର
କରି ଜଳଦ୍ୱାରା ସେସ୍ଥାନ ସେଚନ କରିବ ପୁନଶ୍ଚ କାଂସ୍ୟ
ପାତ୍ରରେ ଅଗ୍ନି ଆଣି ପଶ୍ଚିମ ମୁଖ କରି ତାହା ସ୍ଥାପନ କରିବ
ତଦୁତ୍ତରୁଁ ଅଗ୍ନିର ପଶ୍ଚିମ ଏବଂ ଯଜମାନର ଦକ୍ଷିଣରେ ସ୍ନାନ
କରି ନବୀନ ବସ୍ତ୍ର ପରିଧାନ କରିଥିବା କୁମାରକୁ ମାତା କୋ-
ଳରେ ବସାଇ ବସିବ ତଦନନ୍ତର ପୁଷ୍ପ ଚନ୍ଦନ ତାମ୍ବୂଲ ଏମାନଙ୍କୁ
ହସ୍ତରେ ଗ୍ରହଣକରି " ଓଁ ଅଦ୍ୟ କର୍ତ୍ତବ୍ୟ ଚୂଡ଼ାକରଣ ,, ବାକ୍ୟ

ଶର୍ମାଣଂ ବ୍ରାହ୍ମଣମେଭିଃ ପୁଷ୍ପଚନ୍ଦନତାମ୍ବୂଳବାସୋଭି
ର୍ବ୍ରହ୍ମ ତ୍ୱେନ ତ୍ୱାମହଂ ବୃଣେ ଇତି ବ୍ରହ୍ମାଣଂ ବୃଣୁୟାତ୍
ଓଁ ବୃତୋଽସ୍ମୀତି ପ୍ରତିବଚନଂ ଓଁ ଯଥାବିହିତଂ କର୍ମ କୁର୍ବିତି
ଯଜମାନେନୋକ୍ତେ ଓଁ କରବାଣୀତି ପ୍ରତିବଚନଂ ତତୋ
ଯଜମାନୋଽଗ୍ନେ ର୍ଦକ୍ଷିଣତଃ ଶୁଦ୍ଧମାସନଂ ଦତ୍ୱା ତଦୁପରି-
ପ୍ରାଗଗ୍ରାନ୍ କୁଶାନାସ୍ତୀର୍ଯ୍ୟାଗ୍ନିଂ ପ୍ରଦକ୍ଷିଣଂ କାରୟିତ୍ୱା ଅ-
ସ୍ମିନ୍କର୍ମଣିତ୍ୱଂମେବ୍ରହ୍ମା ଭବେ ତ୍ୟଭିଧାୟ ଓଁ ଭବାମୀତିତେ-
ନୋକ୍ତେ ବ୍ରହ୍ମାଣମୁଦଙ୍ମୁଖଂ ତତ୍ରୋପବେଶ୍ୟ ପ୍ରଣୀତାପାତ୍ରଂ
ପୁରତଃ କୃତ୍ୱା ବାରିଣା ପରିପୂର୍ଯ୍ୟ କୁଶୈ ରାଚ୍ଛାଦ୍ୟ ବ୍ରହ୍ମଣୋ
ମୁଖମବଲୋକ୍ୟାଗ୍ନେ ରୁତ୍ତରତଃ କୁଶୋପରି ନିଦଧ୍ୟାତ୍
ତତଃ ପରିସ୍ତରଣଂ ବର୍ହିଷଶ୍ଚତୁର୍ଥଭାଗମାଦାୟ ଅଗ୍ନେ

---

ପରି ବ୍ରହ୍ମାଙ୍କୁ ବରଣ କରିବ । ତତ୍ପରେ "ବୃତୋଽସ୍ମି" ପ୍ରତି
ବଚନ ବ୍ରହ୍ମା କହିବେ । "ଓଁ ଯଥାବିହିତଂ କର୍ମକୁରୁ" ବୋଲି
ଯଜମାନ କହିଲାରୁ "ଓଁ କରବାଣୀତି" ବୋଲି ପ୍ରତିବଚନ
କହିବେ । ତତ୍ପରେ ଯଜମାନ ଅଗ୍ନିଙ୍କର ଦକ୍ଷିଣପାର୍ଶ୍ୱରେ
ଶୁଦ୍ଧ ଆସନ ପକାଇ ସେହି ଆସନ ଉପରେ ପୂର୍ବକୁ ଅଗ୍ରହୋଇ
ଥିବା ତିନଗୋଟି କୁଶ ଦେଇ ଉକ୍ତ ବ୍ରହ୍ମାଙ୍କୁ ଅଗ୍ନି ପ୍ରଦକ୍ଷିଣ
କରାଇ "ଅସ୍ମିନ୍‌କର୍ମଣି ତ୍ୱଂମେ ବ୍ରହ୍ମାଭବ" ବୋଲି କହିବ
ଏବଂ ଭବାମୀତି ବୋଲି ବ୍ରହ୍ମା କହିଲାରୁ ଉତ୍ତରକୁ ମୁଖକରାଇ
ତାଙ୍କୁ ଉକ୍ତଆସନରେ ବସାଇବ ଅନନ୍ତର ପ୍ରଣୀତାପାତ୍ରକୁ
ଅଗ୍ରରେ ରଖି ଜଳଦ୍ୱାରା ସେ ପାତ୍ରକୁ ପୂର୍ଣ୍ଣକରି କୁଶମାନଙ୍କଦ୍ୱାରା
ଆଚ୍ଛାଦିତ କରି ବ୍ରହ୍ମାଙ୍କ ମୁଖକୁ ଅବଲୋକନ କରିତଃ ଅଗ୍ନିଙ୍କ
ଉତ୍ତର ଦିଗରେ କୁଶୋପରି ସ୍ଥାପନ କରିବ ତତ୍ପରେ ପରି
ସ୍ତରଣ କରିବ ।

କୁଶର ଚତୁର୍ଥ ଭାଗ ଆଣି ଆଗ୍ନେୟ କୋଣଠାରୁ

ଦ୍ୟାଦୀଶାନାନ୍ତଂ ବ୍ରହ୍ମଣୋଽଗ୍ନିପର୍ଯ୍ୟନ୍ତଂ ନୈରୃତ୍ୟାଦ୍ବାୟବ୍ୟାନ୍ତଂ ଅଗ୍ନିତଃ ପ୍ରଣୀତାପର୍ଯ୍ୟନ୍ତଂ ତତୋଽଗ୍ନେ ରୁତ୍ତରତଃ ପଶ୍ଚିମଦିଶି ପବିତ୍ରଚ୍ଛେଦନାର୍ଥଂ କୁଶତ୍ରୟଂ ପବିତ୍ର କର-ଣାର୍ଥଂ ସାଗ୍ରମନନ୍ତର୍ଗର୍ଭିକୁଶପତ୍ରଦ୍ୱୟଂ ପ୍ରୋକ୍ଷଣୀପାତ୍ରଂ ଆଜ୍ୟସ୍ଥାଲୀ ସମ୍ମାର୍ଜନକୁଶାଃ ସମିଧସ୍ତିସ୍ରଃ ସ୍ରୁବଃ ଆଜ୍ୟଂ ଷଟ୍‌ପଞ୍ଚାଶଦୁତ୍ତରବରକମୁଷ୍ଟିଶତଦ୍ୱୟାବଚ୍ଛିନ୍ନ ତଣ୍ଡୁଲ ପୂର୍ଣ୍ଣପାତ୍ରଂ ପବିତ୍ର ଚ୍ଛେଦନ କୁଶାନାଂ ପୂର୍ବପୂର୍ବ ଦିକ୍ କ୍ରମେଣ ସାଦନୀୟଂ ଅମୀଷା ମୁତ୍ତରେ ତ୍ତରତଃ

---

ଐଶାନ୍ୟ କୋଣ ପର୍ଯ୍ୟନ୍ତ ବ୍ରହ୍ମାଙ୍କ ନିକଟରୁ ଅଗ୍ନି ପର୍ଯ୍ୟନ୍ତ, ନୈର୍ଋତକୋଣଠାରୁ ବାୟୁକୋଣ ପର୍ଯ୍ୟନ୍ତ ଅଗ୍ନିଠାରୁ ପ୍ରଣୀତା ପର୍ଯ୍ୟନ୍ତ ଏବଂ ଅସ୍ମଦ୍ଦେଶୀୟ ଶିଷ୍ଟାଚାର ବଶତଃ ପୂର୍ବରେ ଉତ୍ତରାଗ୍ର, ଦକ୍ଷିଣରେ ପୂର୍ବାଗ୍ର ପଶ୍ଚିମରେ ଉତ୍ତରାଗ୍ର ଉତ୍ତରରେ ପୂର୍ବାଗ୍ର ଏହିପରି ପରିସ୍ତରଣ କରିବ ।

ଅଗ୍ନିଙ୍କର ଉତ୍ତର ପଶ୍ଚିମ ଦିଗରେ ପବିତ୍ର ଛେଦନ କରିବା ନିମିତ୍ତ ତିନିଗୋଟି କୁଶ ଏବଂ ପବିତ୍ର କରିବା ସକାଶେ ସାଗ୍ର ଅର୍ଥାତ୍ ଅଚ୍ଛିଦ୍ର ଓ ଗର୍ଭରେ ଆଉ ବିଛ ନଥିବା ଦୁଇଗୋଟି କୁଶ ପତ୍ର, ପ୍ରୋକ୍ଷଣୀ ପାତ୍ର ଆଜ୍ୟସ୍ଥାଲୀ ସମ୍ମାର୍ଜନ ନାମକ କୁଶ ମୁଷ୍ଟି, ଉପଯମନ କରିବାନିମିତ୍ତ କୁଶମୁଷ୍ଟି ପଲାଶ ସମିଧ ୩ ଗୋଟା ସ୍ରୁବ ଆଜ୍ୟ, ଯଜମାନ ହସ୍ତରେ ୨୫୬ ମୁଷ୍ଟି ତଣ୍ଡୁଳଦ୍ୱାରା ପୂର୍ଣ୍ଣପାତ୍ର ଗୋ ୧ ଟା ଏସମସ୍ତ ଦ୍ରବ୍ୟ ପବିତ୍ର ଛେଦନ ପାଇଁ ସ୍ଥାପିତ ହୋଇଥିବା କୁଶମାନଙ୍କର ପୂର୍ବ ୨ ଦିଗରେ କ୍ରମଶଃ ସ୍ଥାପନ କରିବ । ତଦନନ୍ତର ଏମାନଙ୍କର କ୍ରମିକ ଉତ୍ତର ଦିଗରେ ଅସାଧାରଣ ଅର୍ଥାତ୍ କୁଶାଣ୍ଡିକାତ ଅଧିକ ଉପଯୋଗି, ପଦାର୍ଥମାନଙ୍କୁ ସ୍ଥାପନ କରିବ ଯଥା ;

ସାଧାରଣ ବସ୍ତ୍ରନ୍ୟ ପକଲ୍ପନୀୟାନି ତଦଶୀତୋଦକ ମୁଷ୍ଣୋ-
ଦକଂ ଘୃତ ଦଧି ନବନୀତାନ୍ୟତମଦ୍ରବ୍ୟପିଣ୍ଡଃ ଶିଃଶ୍ୱେତ
ଶଲ୍ଲଙ୍କକଂଟକଂ ସାଗ୍ରସପ୍ତବିଂଶତି କୁଶପତ୍ରାଣି ଲୌହକ୍ଷୁରଃ
ନାପିତଃ ବୃଷଭଗୋମୟପିଣ୍ଡଃ ଅନ୍ୟଦପ୍ୟାଚୃଗ୍ ନଳି-
ନୀଦଳାଦ୍ଧ ତତଃ ପବିତ୍ରଚ୍ଛେଦନ କୁଶୈଃ ପବିତ୍ରେ ଛିତ୍ୱା
ସପବିତ୍ର କରେଣ ପ୍ରଣୀତୋଦକଂ ତ୍ରିଃ ପ୍ରୋକ୍ଷଣୀପାତ୍ରେ
ନିଧାୟ ଦ୍ୱାଭ୍ୟାମନାମିକାଙ୍ଗୁଷ୍ଠାଭ୍ୟାଂ ମୁତ୍ତରାଗ୍ରେ ପବିତ୍ରେ
ଗୃହୀତ୍ୱା ତ୍ରିରୁତ୍ପୂବନଂ ତତଃ ପ୍ରୋକ୍ଷଣୀପାତ୍ରଂ ବାମହସ୍ତେ
କୃତ୍ୱା ନାମିକାଙ୍ଗୁଷ୍ଠ ଗୃହୀତ ପବିତ୍ରାଭ୍ୟାଂ ପ୍ରୋକ୍ଷଣୀ ଜଲଂ
ତ୍ରିରୁତ୍କ୍ଷିପ୍ୟ ପ୍ରଣୀତୋଦକେନ ପ୍ରୋକ୍ଷଣୀପାତ୍ର ମୁକ୍ଷ୍ୟ
ପ୍ରୋକ୍ଷଣୀ ଜଲେନାସାଦିତବସ୍ତୂନ୍ୟଭିଷିଚ୍ୟାଗ୍ନି ପ୍ରଣୀତୟୋର୍ମ-

---

ଶୀତଳଜଳ, ଉଷ୍ଣଜଳ, ଘୃତ, ଦଧି, ଲହୁଣି, ଏହିପଦାର୍ଥ ମଧ୍ୟରୁ
ଯେଉଁ ପଦାର୍ଥ ପ୍ରାପ୍ତହେବ ତାହା ଏବ ତିନସ୍ଥାନରେ ଶୁକ୍ଳତାଥିବା
ଝିଙ୍କଡାଠି ଗୋ ୧-ଟି। ଅଗ୍ରସହିତ ସତେଇଶ ଗୋଟି କୁଶ, ଲୌହ
କ୍ଷୁର, ନାପିତ, ବୃଷଭର ଗୋବର ଆଉ ଶିଷ୍ଟାଚାର ବଶତଃ ନଳନୀ-
ଦଳ ପ୍ରଭୃତି , ପବିତ୍ରଚ୍ଛେଦନ ନିମନ୍ତେ କୁଶ ସ୍ଥାପନକରି ପବିତ୍ରଦ୍ୱ-
ୟକୁ ଛେଦନ କରିବ ସପବିତ୍ରହସ୍ତରେ ପ୍ରଣୀତାଜଳକୁ ତିନିବାର
ପ୍ରୋକ୍ଷଣୀ ପାତ୍ରରେ ପକାଇ ଅନାମିକା ଓ ଅଙ୍ଗୁଷ୍ଠ ଏହିଦୁଇ ଅଙ୍ଗୁଳୀ-
ରେ ଉତ୍ତରକୁ ଅଗ୍ରହୋଇଥିବା ପବିତ୍ରଦ୍ୱୟକୁ ଗ୍ରହଣକରି ତିନିବାର
ବିନ୍ଧୁବ। ତତ୍ପରେ ପ୍ରୋକ୍ଷଣୀପାତ୍ରକୁ ବାମହସ୍ତରେଧରି ଅନାମିକା ଓ-
ଅଙ୍ଗୁଷ୍ଠ ଏହିଦୁଇଅଙ୍ଗୁଳୀରେ ଗୃହୀତ ହୋଇଥିବା ପବିତ୍ରଦ୍ୱୟଦ୍ୱାରା
ପ୍ରୋକ୍ଷଣୀଜଳକୁ ତିନିବାର ଊର୍ଦ୍ଧ୍ୱକୁ ସେଚନକରିବ। ପ୍ରଣୀତାଜଳରେ
ପ୍ରୋକ୍ଷଣୀପାତ୍ରକୁ ସେଚନକରି ସେହିପ୍ରୋକ୍ଷଣୀପାତ୍ରସ୍ଥ ଜଳଦ୍ୱାରା-
ସ୍ଥାପିତ ଦ୍ରବ୍ୟମାନଙ୍କୁ ସେଚନ କରିତଃ ଅଗ୍ନି ପ୍ରଣିତା ଏହିଦୁହିଙ୍କମଧ୍ୟ

ଦେଥ୍ୟ ପ୍ରୋକ୍ଷଣୀପାତ୍ରଂ ନିଦଧ୍ୟାତ୍ ଅଜ୍ୟସ୍ଥାଲ୍ୟା ମାଜ୍ୟଂ
କୃତ୍ୱାଽ ଯିସ୍ତ୍ରି ଯ୍ୟୁଜ୍ଜ୍ୱଲତ୍ତୃଣାଦିକମାଦାୟାଜ୍ୟସ୍ୟୋପରି ପ୍ରଦ-
କ୍ଷିଣଂ ଭ୍ରାମୟିତ୍ୱା ବହ୍ନୌ ତତ୍ କ୍ଷିପେତ୍ ତତସ୍ତ୍ରିଃ ସ୍ରୁବ
ପ୍ରତପନଂ ସମ୍ମାର୍ଜ୍ଜନକୁଶାନା ମଗ୍ରୈରନ୍ତରତୋମୂଳୈ ର୍ବା-
ହ୍ୟଃ ସ୍ରୁବଂ ସମ୍ମୃଜ୍ୟ ପ୍ରଣୀତୋଦକେନାଭ୍ୟୁକ୍ଷ୍ୟ ପୂର୍ବବତ୍ତ୍ରିଃ
ପ୍ରତପ୍ୟ ଦକ୍ଷିଣତୋନିଦଧ୍ୟାତ୍ ତତଃ-ଅଗ୍ନିତଃ ପ୍ରଦକ୍ଷିଣ କ୍ର-
ମେଣାଜ୍ୟମବତା ଯାଗ୍ରତୋ ନିଧାତ୍ ତତଃପ୍ରୋକ୍ଷଣୀ ବତ୍ତ୍ରିଗ୍-
ନ୍ତ୍ୟୋତ୍ପୂବନଂ ଅବେକ୍ଷ୍ୟ ସତ୍ୟପ୍ରଦ୍ରବ୍ୟେ ତନ୍ନିରସନଂ ପୂର୍ବବ
ତ୍ପ୍ରୋକ୍ଷଣ୍ୟୁତ୍ପୂବନଂ ତତଃଉତ୍ଥାୟ ଉପଯମନକୁଶାନା ଦାୟ
ବାମହସ୍ତେକୃତ୍ୱା ପ୍ରଜାପତିଂ ମନସାଧ୍ୟାତ୍ୱା ତୁଷ୍ଣୀମଗ୍ନୌ

---

ରେ ସେହିପ୍ରୋକ୍ଷଣୀପାତ୍ରକୁ ରଖିବ । ତତ୍ପରେ ଆଜ୍ୟସ୍ଥାଲୀରେ ଆଜ୍ୟ-
ରଖି ଅଗ୍ନିରେ ବସାଇ ଜଳୁଥିବା ତୃଣ ଅଥବା କାଷ୍ଠକୁ ଧରି ଘୃତର
ଉପରି ଭାଗରେ ପ୍ରଦକ୍ଷିଣକ୍ରମରେ ବୁଲାଇଆଣି ତାହାକୁ ଅଗ୍ନିରେ
ପକାଇବ । ତତ୍ପରେ ସ୍ରୁବକୁ ତିନିବାର ତତାଇ ସମ୍ମାର୍ଜ୍ଜନ ନିମନ୍ତେ-
ସ୍ଥାପିତ ହୋଇଥିବା କୁଶମାନଙ୍କ ଅଗ୍ରରେ ଅଗ୍ର, ମୂଳରେ
ମୂଳ ଏବଂ ମଧ୍ୟରେ ମଧ୍ୟପ୍ରଦେଶ ସମ୍ମାର୍ଜ୍ଜନ କରି ପ୍ରଣୀତାଜଳରେ
ସେଚନକରତଃ ପୂର୍ବପରି ତିନିବାର ତତାଇ ଆପଣାର ଦକ୍ଷିଣପାର୍ଶ୍ୱ-
ରେ ରଖିବ । ତଦନନ୍ତର ଅଗ୍ନିରୁ ଘୃତକୁ ପ୍ରଦକ୍ଷିଣକ୍ରମରେ ଓହ୍ଲାଇ
ଆଣି ଆପଣା ଆଗରେ ରଖିବ । ତତ୍ପରେ ପ୍ରୋକ୍ଷଣୀ ପାତ୍ରକୁ ବଞ୍ଚୁ-
ଲ ର୍ ଅଜ୍ୟକୁ ତିନିବାର ବାନ୍ଧି ତନ୍ଦ୍ରରେ ( ସେଥିଭିତରେ ) କୌ-
ଣସି ଜଳାଦି ଅସତ୍ ଦ୍ରବ୍ୟ ଥିଲେ ତାହା ବାହାର କରିଦେବ । ପୁ-
ନଶ୍ଚ ପୂର୍ବପରି ପ୍ରୋକ୍ଷଣୀ ପାତ୍ରକୁ ବଞ୍ଚୁବ । ତତ୍ପରେ ଉଠି ଉପଯମନ
ସଙ୍କାଶେ ସ୍ଥାପିତ ହୋଇଥିବା କୁଶମାନଙ୍କୁ ବାମହସ୍ତରେ ଧରି ପ୍ରଜା-
ପତିଙ୍କୁ ମନରେ ଧ୍ୟାନ କରିତଃ ମୌନଭାବରେ ତିନିଗୋଟି ସମିଧ

ଧୃତାକ୍ତାଃ ସମିଧସ୍ତିସ୍ରଃ ପ୍ରକ୍ଷିପେତ୍ ତତଉପବିଶ୍ୟ ସପବିତ୍ର ପ୍ରୋକ୍ଷଣ୍ୟୁଦକେନ ପ୍ରଦକ୍ଷିଣକ୍ରମେଣାଗ୍ନିଂ ପର୍ଯ୍ୟୁକ୍ଷ୍ୟ ପ୍ରଣୀତାପାତ୍ରେ ପବିତ୍ରେ କୃତ୍ୱା ବ୍ରହ୍ମଣାନ୍ୱାରବ୍ଧଃ ପାତିତ ଦକ୍ଷିଣ ଜାନୁଃ ସମିଦ୍ଧତମେଽଗ୍ନୌ ଜୁହୁୟାତ୍ ତତ୍ରପ୍ରତ୍ୟାହୁତ୍ୟନନ୍ତରଂ ସ୍ରୁବାବସ୍ଥିତହୁତଶେଷଘୃତସ୍ୟ ପ୍ରୋକ୍ଷଣୀପାତ୍ରେ ପ୍ରକ୍ଷେପଃ ଓଁ ପ୍ରଜାପତୟେ ସ୍ୱାହା ଇଦଂ ପ୍ରଜାପତୟେ ୧ ଇତି ମନସା ଓଁ ଇନ୍ଦ୍ରାୟ ସ୍ୱାହା ଇଦମିନ୍ଦ୍ରାୟ ୨ ଇତ୍ୟାଘାରୌ ଓଁ ଅଗ୍ନୟେ ସ୍ୱାହା ଇଦମଗ୍ନୟେ ୩ ଓଁ ସୋମାୟ ସ୍ୱାହା ଇଦଂ ସୋମାୟ ୪ ଇତ୍ୟାଜ୍ୟଭାଗୌ ଓଁ ଭୂଃସ୍ୱାହା ଇଦମଗ୍ନୟେ ୫ ଓଁ ଭୁବଃ ସ୍ୱାହା ଇଦଂବାୟବେ ୬ ଓଁ ସ୍ୱଃସ୍ୱାହା ଇଦଂ ସୂର୍ଯ୍ୟାୟ ୭ ଏତାମହାବ୍ୟାହୃତୟଃ

---

ଘୃତରେ ବୁଡ଼ାଇ ଅଗ୍ନିରେ ପକାଇବ । ତତ୍ପରେ ଆସନରେ ବସି ପବିତ୍ରସହିତ ପ୍ରୋକ୍ଷଣୀଜଳକୁ ପ୍ରଦକ୍ଷିଣକ୍ରମେ ଅଗ୍ନିରେ ସେଚନ କରିବ । ତତ୍ପରେ ପ୍ରଣିତା ପାତ୍ରରେ ପବିତ୍ରଦ୍ୱୟ ରଖିବ୍ରହ୍ମାଙ୍କଦ୍ୱାରା ସ୍ପୃଷ୍ଟହୋଇ ଦକ୍ଷିଣଜାନୁଭୂମିରେ ପକାଇ ଜଳୁଥିବା ଅଗ୍ନିରେ ହୋମ କରିବ । ତଦନନ୍ତର ସେହିଅଗ୍ନିରେ ପ୍ରତ୍ୟାହୁତିଦେଇ ସାରିଲାରୁ ସ୍ରୁବରେଥିବା ହୋମଶେଷଘୃତକୁ ପ୍ରୋକ୍ଷଣିପାତ୍ରରେ ପକାଇବ । ତତ୍ପରେ ମନେମନେ "ଓଁ ପ୍ରଜାପତୟେ ସ୍ୱାହା ଇଦଂପ୍ରଜାପତୟେ" ଏବଂ "ଓଁ ଇନ୍ଦ୍ରାୟ ସ୍ୱାହା ଇଦମିନ୍ଦ୍ରାୟ" ବୋଲିକହି ଆଘାର ଦ୍ୱୟ ଦେବ । "ଓଁଅଗ୍ନୟେ ସ୍ୱାହା ଇଦମଗ୍ନୟେ" "ଓଁ ସୋମାୟ ସ୍ୱାହା ଇଦଂସୋମାୟ" ବୋଲି ଆଜ୍ୟଭାଗଦ୍ୱୟ ଦେବ । "ଓଁ ଭୂଃ ସ୍ୱାହା ଇଦମଗ୍ନୟେ" "ଓଁ ଭୁବଃ ସ୍ୱାହା ଇଦଂବାୟବେ" "ଓଁ ସ୍ୱଃ ସ୍ୱାହା ଇଦଂସୂର୍ଯ୍ୟାୟ" ବୋଲି ହୋମକରିବ । ଏହାକୁ ମହାବ୍ୟାହୃତି ହୋ-

ଓଁ ତ୍ୱନ୍ନୋଅଗ୍ନେବରୁଣସ୍ୟ ବିଦ୍ୱାନ୍ ଦେବସ୍ୟ ହେଡୋ ଅବ-
ଯାସିସୀଷ୍ଠାଃ ଯଜିଷ୍ଠୋ ବହ୍ନିତମଃଶୋଶୁଚାନୋ ବିଶ୍ୱା-
ଦ୍ୱେଷା ସିପ୍ରମୁମୁଗ୍ଧ୍ୟସ୍ମତ୍ସ୍ୱାହା ଇଦଂ ମଗ୍ନୀବରୁଣାଭ୍ୟାଂ ୮
ଓଁ ସତ୍ୱନ୍ନୋଅଗ୍ନେବମୋଭବୋତୀନେଦଷ୍ଠୋଅସ୍ୟା ଉଷ
ସୋବ୍ୟୁଷ୍ଟୌ ଅବଯକ୍ଷ୍ୱନୋ ବରୁଣଁ ରରାଣୋ ବୀହିମୃଡ଼ୀକଁ
ସୁହବୋନଏଧିଃ ସ୍ୱାହା ଇଦମଗ୍ନୀବରୁଣାଭ୍ୟାଂ ଓଁ ଅୟା
ଶ୍ଚାଗ୍ନେସ୍ୟନଭିଶସ୍ତି ପାଶ୍ଚସତ୍ୱମିତ୍ୱାମୟାଅସି ଅୟାନୋ ଯଜ୍ଞଂ
ବହାସ୍ୟ ଯାନୋଧେହି ଭେଷଜଁ ସ୍ୱାହା ଇଦ ମଗ୍ନୟେ ୧୦
ଓଁ ଯେତେଶତଂ ବରୁଣଯେ ସହସ୍ର ଯଜ୍ଞିୟାଃ ପାଶା ବି-
ତତା ମହାନ୍ତାଃ ତେଭିର୍ନୋ ଅଦ୍ୟସବିତୋତ୍ୱବିଷ୍ଣୁର୍ବିଶ୍ୱେ
ମୁଞ୍ଚନ୍ତୁ ମରୁତଃସ୍ୱର୍କାଃ ସ୍ୱାହା ଇଦଂ ବରୁଣାୟ ସବିତ୍ରେ
ବିଷ୍ଣବେ ବିଶ୍ୱେଭ୍ୟୋ ଦେବେଭ୍ୟୋ ମରୁଦ୍ଭ୍ୟଃ ସ୍ୱର୍କେଭ୍ୟଃ
୧୧ ଓଁ ଉଦୁତ୍ତମଂ ବରୁଣ ପାଶମସ୍ମଦବାଧମଂ ବିମଧ୍ୟମଁ
ଶ୍ରଥାୟ ଅଥାବୟ ମାଦିତ୍ୟବ୍ରତେତବାନାଗସୋଅଦିତୟେ
ସ୍ୟାମ ସ୍ୱାହା ଇଦଂ ବରୁଣାୟ ୧୨ ଇତି ସର୍ବପ୍ରାୟଶ୍ଚିତ୍ତଂ
ଓଁ ପ୍ରଜାପତୟେ ସ୍ୱାହା ଇଦଂ ପ୍ରଜାପତୟେ ୧୩ ଇତି ମ-

---

ନବୋଲିଯାଏ । "ଓଁ ତ୍ୱନ୍ନୋଅଗ୍ନେ" ଏହିମନ୍ତ୍ରପଢି ସ୍ୱାହା ଇଦମଗ୍ନି
ବରୁଣାଭ୍ୟାଂ ବୋଲ ଏବ "ଓଁ ସତ୍ୱନ୍ନୋଅଗ୍ନେ" ଏହିମନ୍ତ୍ରପଢି
"ସ୍ୱାହା ଇଦମଗ୍ନି ବରୁଣାଭ୍ୟାଂ" ବୋଲ ଏବ "ଓଁ ଅୟାଶ୍ଚାଗ୍ନେ"
ଏହିମନ୍ତ୍ରପଢି ସ୍ୱାହା ଇଦମଗ୍ନୟେ" ବୋଲ "ଓଁ ଯେତେଶତଂ" ଏହି
ମନ୍ତ୍ରପଢି" ସ୍ୱାହା ଇଦଂବରୁଣାୟ ଇତ୍ୟାଦି ବୋଲ ହୋମକରିବ
ଓଁ ଉଦୁତ୍ତମଂ ଏହିମନ୍ତ୍ରପଢି "ସ୍ୱାହା ଇଦଂବରୁଣାୟ" ବୋଲ ହୋ-
ମକରିବ । ଏହାକୁ ସର୍ବପ୍ରାୟଶ୍ଚିତ୍ତ ହୋମକହନ୍ତି । ଓଁ ପ୍ରଜାପତୟେ
ସ୍ୱାହା ଇତ୍ୟାଦି ମନରେ ସ୍ମରଣକରି ପ୍ରାଜାପତ୍ୟ ଏବ ଅଗ୍ନୟେ ସ୍ୱି-

ନଂସା ଇତି ପ୍ରାଜାପତ୍ୟଂ ଓଁ ଅଗ୍ନୟେ ସ୍ୱିଷ୍ଟକୃତେ ସ୍ୱାହା ଇଦ
ମଗ୍ନୟେ ସ୍ୱିଷ୍ଟକୃତେ ୧୮ ଇତି ସ୍ୱିଷ୍ଟକୃତ୍ ଅଥସଂସ୍ରବ ପ୍ରା-
ଶନଂ ଜଳ ଆଚମ୍ୟ ଓଁ ଅଦ୍ୟାମୁଷ୍ୟକୁମାରସ୍ୟ କୃତୈତ
ଚ୍ଛୂଡ଼ାକରଣ ହୋମକର୍ମଣି କୃତାକୃତା ବେକ୍ଷଣରୂପ ବ୍ରହ୍ମ
କର୍ମ ପ୍ରତିଷ୍ଠାର୍ଥମିଦଂ ପୂର୍ଣ୍ଣପାତ୍ରଂ ପ୍ରଜାପତି ଦୈବତ ନାନା-
ଗୋତ୍ରାୟ ନାନାଶର୍ମଣେ ବ୍ରାହ୍ମଣାୟ ବ୍ରହ୍ମଣେ ଦକ୍ଷିଣାଂଅହ
ମହଂସଂପ୍ରଦଦେ ଇତି ବ୍ରହ୍ମଣେ ଦକ୍ଷିଣାଂଦଦ୍ୟାତ୍ ଓଁ ସ୍ୱସ୍ତୀତି
ପ୍ରତିବଚନଂ ତତୋ ବ୍ରହ୍ମଗ୍ରନ୍ଥି ବିମୋକଃ ତତଃ ଓଁ ସୁମିତ୍ରି-
ୟା ନଆପଓଷଧୟଃ ସନ୍ତୁ ଇତି ପବିତ୍ରାଭ୍ୟାଂ ପ୍ରଣୀତାଜଳ-
ମାନୀୟ ତେଷାଂଶିରଃ ସମ୍ମୃଜ୍ୟ ଓଁ ଦୁର୍ମିତ୍ରିୟା ସ୍ତସ୍ମୈ ସନ୍ତୁ ଯୋ-
ସ୍ମାନ୍ ଦ୍ୱେଷ୍ଟିୟଞ୍ଚ ବୟଂଦ୍ୱିଷ୍ମଃ ଇତ୍ୟୈଶାନ୍ୟାଂ ପ୍ରଣୀତା
ନ୍ୟୁବ୍ଜୀକରଣଂ ତତସ୍ତୃଣ କ୍ରମେଣ ବର୍ହିରୁତ୍ଥାପ୍ୟାଜ୍ୟେ ନା-
ଭିଘାର୍ୟ ଓଁ ଦେବାଗାତୁ ବିଦୋଗାତୁଂ ବିତ୍ୱାଗାତୁ ମିତମନ-
ସସ୍ପତ ଇମଂ ଦେବଯଜ୍ଞ ସ୍ୱାହା ବାତେଧାଃ ସ୍ୱାହା ଇତିମନ୍ତ୍ରେଣ

---

ଷ୍ଟକୃତେ" ଇତ୍ୟାଦି ବହ୍ନି ସ୍ୱିଷ୍ଟକୃତଙ୍କୁ ହୋମକରିବ ଏଥିଉତ୍ତାରୁ
ହୋମଶେଷଘୃତକୁ ସେବନକରି ଅଚମନକରିବ ତତ୍ପରେ "ଓଁ ଅଦ୍ୟ
ଅମୁଷ୍ୟ କୁମାରସ୍ୟ" ଏହି ଗଦ୍ୟ ପଢ଼ି ବ୍ରହ୍ମାଙ୍କୁ ଦକ୍ଷିଣାଦେବ । ବ୍ରହ୍ମା
ତାହାଗ୍ରହଣକରି ସ୍ୱସ୍ତି ପ୍ରତିବଚନ କହିବେ ତତ୍ପରେ ବ୍ରହ୍ମଗ୍ରନ୍ଥି ଫି-
ଟାଇବ । "ଓଁ ସୁମିତ୍ରିୟାନ" ମନ୍ତ୍ରପଢ଼ି ପବିତ୍ରଦ୍ୱୟଦ୍ୱାରା ପ୍ରଣୀତା ପାତ୍ରରୁ
ଜଳ ଆଣି ମସ୍ତକରେ ସେଚନକରିବ । "ଓଁ ଦୁର୍ମିତ୍ରିୟାନ" ଏମନ୍ତ୍ରପଢ଼ି
ଐଶାନ୍ୟକୋଣରେ ପ୍ରଣୀତାକୁ ଓଲଟାଇ ରଖିବ ତତ୍ପରେ ଯଥାକ୍ର--
ମେ ସ୍ଥାପିତ ହୋଇଥିବା କୁଶମାନଙ୍କୁ ଘୃତରେ ବୁଡ଼ାଇ "ଓଁ ଦେବାଗା
ତୁ" ଏହିମନ୍ତ୍ରପଢ଼ି ଘୃତରେ ବୁଡ଼ାହୋଇଥିବା କୁଶମାନଙ୍କୁ ହୋମକରିବ

ବର୍ହିର୍ହୋମଃ ଅଥ ଶୀତୋଦକ ମୁଷ୍ଣୋଦକେନ ଓଁ ଉଷ୍ଣେନ
ବାୟଉଦକେନେଦ୍ୟୁହତେକେଶାନ୍ବପ . ଇତିମନ୍ତ୍ରେଣାଭିଷି-
ଚ୍ୟତନ୍ନମିଶ୍ରିତୋଦକେ ନବନୀତାଦ୍ୟନ୍ୟତମପିଣ୍ଡଂ ତୂଷ୍ଣୀଂ
ପ୍ରକ୍ଷିପ୍ୟ ଦକ୍ଷିଣ ପଶ୍ଚିମୋ ତ୍ତରକ୍ରମେଣ ପୂର୍ବଂକୃତଶାବଦ୍ଧ କୁମା-
ରକେଶକୂଟିକାସ୍ୱେ ଦକ୍ଷିଣକୂଟିକାଂ ଓଁସବିତ୍ରା ପ୍ରସୂତା-
ଦୈବ୍ୟା ଅପଉନ୍ଦନ୍ତୁତେତନୂ ଦୀର୍ଘାୟୁତ୍ୱାୟ ବର୍ଚସେ ଇତି
ମନ୍ତ୍ରଂ ପଠିତ୍ୱା ତେନୈବମିଶ୍ରିତବାରିଣା ପ୍ରକ୍ଷାଲ୍ୟତତୋ
ଦକ୍ଷିଣଭାଗସ୍ଥିତ କୂଟିକା ଭାଗତ୍ରୟଂ କୃତ୍ୱା ତତ୍ରୈକାଂଏକାଂ
କୂଟିକାଂ ପ୍ରତିକୁଶପତ୍ର ତ୍ରୟସଂଯୋଜନଂ କୃତ୍ୱା ଶଲ୍ଲକୀକ-
ଣ୍ଟକେନ ତୂଷ୍ଣୀଂ ଦବରଣଂ କୃତ୍ୱା ଭାଗତ୍ରୟଂ କୁର୍ଯ୍ୟାତ୍ ତତଃ
ସପୂର୍ବାଂଶତ କୁଶପତ୍ରୈଃ ପତ୍ରତ୍ରୟପ୍ରମାଣାନ୍ୟ ତତ୍କେଶମୂଲସ
ଲଗ୍ନାଗ୍ରକୂଟିକାପ୍ରଥମ ଭାଗମଧ୍ୟା ନ୍ତରତଂ କୁର୍ଯ୍ୟାତ୍

---

ପଞ୍ଚତ୍ରକରଣାନ୍ତ କୁଶ ହୋମ ଶେଷରେ „ ଓଁ ଉଷ୍ଣେନବା ”
ମନ୍ତ୍ରପଢି ଶୀତୋଦକରେ ଉଷ୍ଣୋଦକ ଦେଇନକର ଦଧିମିଶ୍ରିତ
ଜଳରେ, ମୌନହୋଇ, ନବନୀତାଦି କୌଣସି ଏକପଦାର୍ଥର ପିଣ୍ଡ-
କୁ ପକାଇବ ତତ୍ପରେ ଦକ୍ଷିଣ ପଶ୍ଚିମକ୍ରମରେ ବନ୍ଧାହୋଇଥିବା
କୁମାରର କେଶ ଜଟ ତିନିଗୋଟିରୁ ଦକ୍ଷିଣଜଟକୁ " ଓଁ ସବିତାପ୍ରସୂ-
ତାଦେବ୍ୟା " ମନ୍ତ୍ରକୁପଢି ପୂର୍ବୋକ୍ତ ଦଧି ମିଶ୍ରିତଜଳରେ ଧୌତକ-
ରିବ । ପରେ ସେହିଦକ୍ଷିଣ ଭାଗସ୍ଥିତଜଟକୁ ତିନିଭାଗକରି ମୌନ-
ଭାବରେ ତିନିଭାଗ ( ବିଭକ୍ତ ) କରିପ୍ରତ୍ୟେକ ଭାଗରେ ତିନିଗୋଟି
ଲେଖାଏ କୁଶବାନ୍ଧିବ

ତଦନ୍ତର ପୂର୍ବ ସ୍ଥାପିତ ସତାଇଶଗୋଟି କୁଶମଧ୍ୟରୁ ଗୋ ■ ଟି
କୁଶଆଣି ବିଭକ୍ତ ହୋଇଥିବା ପ୍ରଥମଭାଗକେଶର ମଧ୍ୟସ୍ଥିତଜଟର

ଓଁ ଔଷଧେତ୍ରାୟସ୍ୱୈନଂ ସ୍ୱଧିତେ ମୈନଁ ହିଁସୀଃ ଶିବୋନାମାସି ସ୍ୱଧିତ
ସ୍ତେପିତା ନମସ୍ତେ ଅସ୍ତୁ ମା ମା ହିଁସୀଃ ଇତିମଂନ୍ତ୍ରେଣ ଲୌହକ୍ଷୁରଂ
ଗୃହୀତ୍ୱା ଓଁ ନିବର୍ତ୍ତୟାମ୍ୟାୟୁଷେନ୍ନାଦ୍ୟାୟ ପ୍ରଜନନାୟରାୟସ୍ପୋ
ଷାୟସୁପ୍ରଜାସ୍ତ୍ୱାୟସୁବୀର୍ଯ୍ୟାୟ ଇତିମନ୍ତ୍ରେଣ କୂଟ୍ଟିକାସଁଲଗ୍ନଂ-
କୁର୍ଯ୍ୟାତ୍ ତତଃ କୁଶପତ୍ର ତ୍ରୟସନ୍ଧିତାଂ କୂଟ୍ଟିକାଂ ନିଦଧାତି ଓଁ
ଯେନାବପତ୍ସବିତା କ୍ଷୁରେଣ ସୋମସ୍ୟ ରାଜ୍ଞୋ ବରୁଣସ୍ୟ ବିଦ୍ୱାନ୍
ତେନ ବ୍ରହ୍ମାଣୋ ବପତେଦମସ୍ୟାୟୁଷ୍ୟଂ ଜରଦଷ୍ଟିର୍ଯ୍ୟଥାସତ୍
ଇତିମଂନ୍ତ୍ରେଣ ପଶ୍ଚିମକୂଟ୍ଟିକାଚ୍ଛେଦନଂ କୁର୍ଯ୍ୟାତ୍ ତତସ୍ତାନ୍ଲୂନ
କୁଶପତ୍ରତ୍ରୟସନ୍ଧିତାନ୍ ଅନଡୁଦ୍ଗୋମୟପିଣ୍ଡୋପରି ଉତ୍ତରସ୍ୟାଂ
ଦିଶିଧ୍ୟାତ୍ ଅନେନୈବ ପୂର୍ବପ୍ରକ୍ଷାଳିତପରଭାଗନ୍ତ୍ରୟେ କୁଶ-
ପତ୍ରନିତୟାଂ ତନ୍ନିଧାନାଦି ଚ୍ଛେଦନବର୍ଜ୍ଜିଂ ସର୍ବଂ ପୂର୍ବବଦେବ
ଚ୍ଛେଦନଂ କୃତ୍ୱା ତତଃପଶ୍ଚିମକୂଟ୍ଟିକାୟାଂ ପୂର୍ବବ ତେନୈବ
ମନ୍ତ୍ରେଣ ପ୍ରକ୍ଷାଳନଂ କୃତ୍ୱା ଶଲ୍ଲକୀକଂଣ୍ଟକେନ ଭାଗତ୍ରୟ

---

ମଧ୍ୟପ୍ରଦେଶରେ "ଓଁ ଓଷଧେତ୍ରାୟସ୍ୱ" ମନ୍ତ୍ରପାଠକରି ବାନ୍ଧିବ
ଏବଂ "ଓଁ ନିବର୍ତ୍ତୟାମି" ମନ୍ତ୍ରଟି ଲୌହକ୍ଷୁର କୁଣ୍ଡରେ ଲଗାଇବ
ତାପରେ କୁଶପତ୍ର ତ୍ରୟଯୁକ୍ତ କେଶକୁ "ଓଁ ଯେନାବପତ୍" ମନ୍ତ୍ରପଢି-
ଛେଦନକରିବ ଏବଂ ସେହି କୁଶପତ୍ର ତିନିଗୋଟି ସହିତ ଛେଦିତ
କେଶମାନଙ୍କୁ ଧର୍ତ୍ତ ହୋଇ ନଥିବା ବାଛୁରିର ଗୋମୟ ପିଣ୍ଡଉପରେ
ଉତ୍ତରଦିଗକୁ ରଖିବ । ତରକୁ ଭାଗତ୍ରୟ ଛେଦନ ଭାଗଯାଇ
ଅବଶିଷ୍ଟଥିବା ଭାଗତ୍ରୟକୁ ଧୌତ କରିବ ଏବଂ ପ୍ରତ୍ୟେକ ଅବ-
ଶିଷ୍ଟ ଭାଗରେ ଗୋଟିଏ ଲେଖାଁଏ କୁଶ ବାନ୍ଧି ପୂର୍ବ ପରି ସମୁଦାୟ
କାର୍ଯ୍ୟ କରିବ କିନ୍ତୁ ତାହା ମୌନଭାବରେ ଛେଦନ କରିବ ଏହିକି
ବିଶେଷ ମାତ୍ର ଛେଦନନ୍ତର ପଶ୍ଚିମ ଜଟାକୁ ପୂର୍ବକଥିତ ମନ୍ତ୍ରରେ
ଧୌତ କରି ମୌନଭାବରେ ଝିଙ୍କଁକାଠିଦ୍ୱାରା ତିନିଭାଗ କରି ପ୍ରତି

କ୍ଷୁରଣଂ କେଶମୂଲସଂଲଗ୍ନାଗ୍ରକେଶାନ୍ତରିତମଧ୍ୟକୁଶପଞ୍ଚକ ନ-
ବ୍ଧାରଣକ୍ଷୁରଗ୍ରହଣତତ୍ସଂଯୋଜନାନି ତତ୍କ୍ରମେଣୈବ ତ-
ନ୍ତ୍ରପ୍ରଥମକୁଟ୍ଟିକାଚ୍ଛେଦନେମନ୍ତ୍ରଃ ଓଁ ତ୍ର୍ୟାୟୁଷଂ ଜମଦଗ୍ନେଃ କ-
ଶ୍ୟପସ୍ୟ ତ୍ର୍ୟାୟୁଷଂ ଯଦ୍ଦେବେଷୁ ତ୍ର୍ୟାୟୁଷଂ ତନ୍ନୋ ଅସ୍ତୁ ତ୍ର୍ୟାୟୁଷଂ
ଇତିମନ୍ତ୍ରେଣଚ୍ଛିତ୍ତ୍ୱା ତତଃପୂର୍ବବଦ୍ଗୋମୟପିଣ୍ଡୋପରିନିଦଧ୍ୟାତ୍
ଇତ୍ୟାବଶିଷ୍ଟଭାଗଦ୍ୱୟେ କୁଶପଞ୍ଚକଂ କେଶାନ୍ତର୍ନିଧାନାଦ
ଚ୍ଛେଦନବର୍ଜ୍ଜଂସର୍ବଂ ପୂର୍ବବଦେବ ଚ୍ଛେଦନଂତୂଷ୍ଣୀମେବଲୂନ-
କୁଶପଞ୍ଚକସହିତକେଶାନାଂ ଗୋମୟପିଣ୍ଡୋପରି ଧାରଣଞ୍ଚ
ତତଉତ୍ତର ଭାଗକୁଟ୍ଟିକାୟାଂ ପ୍ରକ୍ଷାଲନାଦକ୍ଷୁରସଂଯୋଜନାନ୍ତଂ
ତେଷୁ ପୂର୍ବବତ୍ ତନ୍ମନ୍ତ୍ରୈଃ ପ୍ରଯୋଜ୍ୟ ପ୍ରଥମଭାଗକୁଟ୍ଟିକାୟାଃ
ଚ୍ଛେଦନେମନ୍ତ୍ରଃ ଓଁ ଯେନଭୂରିଶ୍ଚରାଦିବଂ ଜ୍ୟୋକ୍ଚପଶ୍ଚାଦ୍ଧି
ସୂର୍ଯ୍ୟଂ ତେନତେବପାମି ବ୍ରହ୍ମଣାଜୀବାତବେଜୀବନାୟସୁଶ୍ଲୋ-
କ୍ୟାୟସ୍ୱସ୍ତ୍ୟୈ ତତଃକେଶାନ୍ ଗୋମୟପିଣ୍ଡୋପରିନିଦଧ୍ୟାତ୍

---

ଭାଗର କେଶମୂଳରେ କୁଶଅଗ୍ର ସଂଲଗ୍ନ କରି ଗୋ ୩ ଠା ଲେ-
ଖାଏଁ କୁଶ ବାନ୍ଧିବ ତତ୍ପରେ ପୂର୍ବ କଥିତ ମନ୍ତ୍ରମାନପଢ଼ି କ୍ଷୁର
ଗ୍ରହଣ ଏବଂ ସଂଯୋଜନ କରିବ । ତନ୍ମଧ୍ୟରୁ ପ୍ରଥମକାଠିକୁ "ଓଁ ତ୍ର୍ୟା-
ୟୁଷଂ ଜମଦଗ୍ନେ " ମନ୍ତ୍ରଦ୍ୱାରା ଛେଦନ କରିବ ଛିନ୍ନ କେଶକୁ
ପୂର୍ବବତ୍ ଗୋମୟ ପିଣ୍ଡରେ ରଖିବ ଏବଂ ଅବଶିଷ୍ଟ ଭାଗଦ୍ୱୟରେ
କୁଶପଞ୍ଚ ଗୋ ୩ ଠା ଲେଖାଏଁ ବାନ୍ଧି ପୂର୍ବପରି କରିବ ତତ୍ପରେ
ମୌନ ହୋଇ ଛେଦନ କରି ଛେଦନାଂଶ ପୂର୍ବରୀତ୍ୟନୁସାରେ
ଗୋମୟ ପିଣ୍ଡରେ ରଖିବ ।

ଉତ୍ତର ପାର୍ଶ୍ୱ କାଠିକୁ ଧୌତଠାରୁ କ୍ଷୁର ସଂଯୋଜନପର୍ଯ୍ୟନ୍ତ
ପୂର୍ବୋକ୍ତ ମନ୍ତ୍ରରେ କରିବ ତନ୍ମଧ୍ୟରୁ ୧ ମଭାଗକୁ " ଓଁ ଯେନ
ଭୂରିଶ୍ଚରାଦିବ " ମନ୍ତ୍ରରେ ଛେଦନ କରି ଛିନ୍ନ କେଶକୁ ଗୋମୟ

ତତୋ ଽବଶିଷ୍ଟଭାଗାଦ୍ଦର୍ଭେ କୁଶପତ୍ରତ୍ରୟେ କେଶାଂଶ୍ଚନିଧାନା
ଦ୍ଛେଦନବର୍ଜିଂ ସର୍ବଂ ପୂର୍ବବ ଦେବଚ୍ଛେଦନଂ କୃତ୍ୱା ଗୋ-
ମୟପିଣ୍ଡୋପରି ଧାରଣମପି ଜଳୈଃ ସମସ୍ତଂ ଶିରଃ ପ୍ରକ୍ଷାଲ୍ୟ ନିଃ
କେଶୋପରି କ୍ଷୁରଂ ପ୍ରଦକ୍ଷିଣକ୍ରମେଣାନୁକ୍ରୋଶାନ୍ ଭ୍ରାମୟେତ
ଓଁ ଯତ୍କ୍ଷୁରେଣ ମଜ୍ଜୟତାସୁପେଶସା ବପ୍ତା ବାବପତି କେଶାଂ
ଛିନ୍ଧି ଶିରୋ ମାସ୍ୟାୟୁଃ ପ୍ରମୋଷୀଃ ଇତି ମନ୍ତ୍ରେଣ ତତସ୍ତୁ ଭ୍ରୂ-
ଦେବାଦ୍ଭିଃ ସମସ୍ତଂ ଶିରଃ ପ୍ରକ୍ଷାଲ୍ୟ ଓଁ ଅକ୍ଷଣ୍ୱନ୍ ପରିବପ ଇତି
ନାପିତ ପ୍ରକ୍ଷୁରଂ ପ୍ରଯଚ୍ଛେତ ଅଥନାପିତଃ ଶିଖାଂ ବ୍ରଜୟିତ୍ୱା ସମସ୍ତଶି
ରୋବପନଂ ଯଥାକୁଳଂ କୁର୍ଯ୍ୟାତ୍ ତାଂଶ୍ଚ କେଶାନ୍ନୂତନ ବସ୍ତ୍ରେଣ
ପ୍ରତୀକ୍ଷ୍ୟମାତା ଦଧିଭକ୍ତଦୂର୍ବାସମନ୍ୱିତ ଗୋମୟପିଣ୍ଡୋପରି
ନିଦଧ୍ୟାତ୍ ତତସ୍ନାତଃ ପୂର୍ବବତ୍ ସ୍ତ୍ରୀଭିଶ୍ଚ ଓଁ ମୂର୍ଦ୍ଧାନଂ
ଦିବୋ ଅରତିଂ ପୃଥିବ୍ୟା ବୈଶ୍ୱାନରମୃତ ଆଜାତମଗ୍ନିଂ କବିଂ
ସମ୍ରାଜ ମତିଥିଂ ଜନାନାମାସନ୍ନା ପାତ୍ରଂ ଜନୟନ୍ତ ଦେବାଃ

---

ପିଣ୍ଡରେ ରଖିବ ଅବଶିଷ୍ଟ ଜାଡ଼ଦ୍ୱୟରେ କୁଶପତ୍ର ସଂଯୋଜନ
ଏବଂ କ୍ଷୁର ସଂଯୋଗ ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ ପୂର୍ବପରି କରି ମୌ-
ନଭାବରେ ଛେଦନ କରି ତାହା ଗୋମୟ ପିଣ୍ଡରେ ରଖିବ ।
ତତ୍ପରେ ସମସ୍ତ ଶିରକୁ ଧୌତକରି "ଓଁ ଯତ୍କ୍ଷୁରେଣ ମଜ୍ଜ-
ୟତା " ମନ୍ତ୍ରକୁ ପଢ଼ି କ୍ଷୁରକୁ କେଶୋପରି ତିନିବାର ପ୍ରଦକ୍ଷିଣ
କରାଇବ ପୁନଶ୍ଚ ମସ୍ତକ ଧୌତକରି "ଓଁ ଅକ୍ଷଣ୍ୱନ୍" ମନ୍ତ୍ରପଢ଼ି
ନାପିତକୁ କ୍ଷୁର ଦେବ ତତ୍ପରେ ନାପିତ ଶିଖାଽର ସମସ୍ତ ମସ୍ତକକୁ
ଅଥବା ଯେଉଁ କୂଳରେ ଯେପରି ଅଛି ଥିବ ସେହିପରି
କ୍ଷୌର କରିବ । ସେହି କେଶମାନଙ୍କୁ ମାତା ନୂତନ ବସ୍ତ୍ରରେ ବାନ୍ଧି
ଦଧି ଦୁର୍ବା ଯୁକ୍ତ ଗୋମୟ ପିଣ୍ଡରେ ସ୍ଥାପନ କରିବ । ପୂର୍ବବତ୍

ସ୍ୱାହା ଇତିମନ୍ତ୍ରେଣ ପୂର୍ଣ୍ଣାହୁତିଃ ତତଉପବଶ୍ୟ ସ୍ରୁବେଣ
ଭସ୍ମାନୀୟ ଦକ୍ଷିଣାନାମିକାଗ୍ର ଗୃହୀତଭସ୍ମନା ତ୍ର୍ୟାୟୁଷଂ କୁର୍ଯ୍ୟାତ୍
ଓଁ ତ୍ର୍ୟାୟୁଷଂ ଜମଦଗ୍ନେ ଇତିଲଲାଟେ ଓଁ କଶ୍ୟପସ୍ୟତ୍ର୍ୟାୟୁଷ
ମିତିଗ୍ରୀବାୟାଂ ଓଁ ଯଦ୍ଦେବାନାଂ ତ୍ର୍ୟାୟୁଷମିତି ଦକ୍ଷିଣବାହୁମୂଲେ
ଓଁ ତନ୍ନୋଅସ୍ତୁ ତ୍ର୍ୟାୟୁଷମିତିହୃଦ ଅନେନୈବ କ୍ରମେଣ
କୁମାରଲଲାଟାଦାବପି ତତ୍ରତତ୍ରେଅସ୍ତୁ ଇତି ବିଶେଷଃ
ତତୋଦୂର୍ବାକ୍ଷତାଦି ଗ୍ରହଣଂ ତତସ୍ତାନ୍ କେଶାନ୍ ସଗୋ-
ମୟପିଣ୍ଡାନ୍ ଗୋଷ୍ଠେସରଉରୀରେବା ଅନ୍ୟସ୍ମିନ୍ନୂଦଙ୍କାଂ
ଇରେବାନଦଧ୍ୟାତ୍ ତତଅଗ୍ନିଗ୍ରୋଭ୍ୟାଦକଂ ଇତିଚୂଡ଼ା-
କରଣଂ । ୮ ।

---

ଅଥ କର୍ଣ୍ଣବେଧଃ

ତତ୍ର ତୃତୀୟେବର୍ଷେ ପଞ୍ଚମେ ବା ପୁଷ୍ୟେନ୍ଦୁଚିତ୍ରା ହରି-
ରେବତ୍ୟନ୍ୟତମନକ୍ଷତ୍ର ସମନ୍ୱିତରକ୍ତା ତରକ୍ତୁ ତଥ୍ୟପୂର୍ବା

---

ପୂର୍ଣ୍ଣାହୁତିଦେବ ତପୂରେ ସ୍ୱୀୟ ଆସନରେ ବସି ସ୍ରୁବଦ୍ୱାରା ଭସ୍ମ
ଆଣି ଦକ୍ଷିଣ ହସ୍ତରେ ଅନାମିକା ଅଙ୍ଗୁଳୀ ଅଗ୍ରରେ ଭସ୍ମ ଗ୍ରହଣ
ପୂର୍ବକ ତ୍ର୍ୟାୟୁଷ ( ପୂର୍ବବତ୍ ) କରିବ ତଦନନ୍ତର ଦୂର୍ବାକ୍ଷତ
ଧରି କୁମାରକୁ ଆଶୀର୍ବାଦ କରିବ ଏବଂ ଗୋମୟ ପିଣ୍ଡରେ ଥିବା
ଛେଦିତ କେଶମାନଙ୍କୁ ଗୋଷ୍ଠରେ ବା ନଦୀତୀରରେ କମ୍ବା କୌଣସି
ଜଳାଶୟ ତଟରେ ପକାଇବ ଏବଂ ଯଥାଶକ୍ତିରେ ହୋତାଧ୍ୟକ୍ଷଙ୍କ
ଉତ୍ସର୍ଗ କରିବ ।

ଚୂଡ଼ାକରଣ ସମାପ୍ତ ।

---

ଅଥ କର୍ଣ୍ଣବେଧ ।

ଏହି କର୍ମ ତୃତୀୟ ଅଥବା ପଞ୍ଚମ ବର୍ଷରେ ପୁଷ୍ୟା, ଇନ୍ଦୁ,
ଚିତ୍ରା, ଶ୍ରବଣା, ରେବତୀ ଏଥି ମଧ୍ୟରୁ କୌଣସି ଏକ ନକ୍ଷତ୍ର ଯୁକ୍ତ

ଦ୍ଧେ ପିତାନ୍ୟୋ ବା ପୂର୍ବାଭିମୁଖୋ ପବିଷ୍ଟଃ କୁମାରସ୍ୟ ମଧୁ-
ରଂଦବ୍ରା ଓ ଭଦ୍ରଂକର୍ଣ୍ଣେଭିଃ ଶୃଣୁୟାମଦେବାଭଦ୍ରଂ ପଶ୍ୟେ
ମାକ୍ଷଭି ଯଜତ୍ରାଃ ସ୍ଥିରୈରଙ୍ଗୈସ୍ତୁଷ୍ଟୁବା ସସ୍ତନୂଭିର୍ବ୍ୟଶେ-
ମହ୍ୱଦେବହିତଂ ଯଦାୟୁଃ ଇତି ମଂତ୍ରେଣ ଦକ୍ଷିଣକର୍ଣ୍ଣ-
ମଭିମଂତ୍ର୍ୟ ଓଁ ବକ୍ଷ୍ୟନ୍ତି ବେଦାଗନୀଗନ୍ତି କର୍ଣ୍ଣଂପ୍ରିୟଁ ସଖା-
ୟଂପରିଷସ୍ୱଜାନା ଯୋଷେବଶିଂକ୍ତେ ବିତତାଧିଧନ୍ୱଂଜ୍ୟାଇୟଂ
ସମନେପାରୟନ୍ତୀ ଇତି ମଂତ୍ରେଣ ବାମକର୍ଣ୍ଣମଭି ମଂତ୍ରୟେତ୍
ତତୋମଧ୍ୟଂବାକ୍ଷ୍ୟ ନାପିତଦ୍ୱାରା ବେଧୟେତ୍ ତସ୍ମିନ୍ସମୟେ
ମଧୁରଦ୍ରବ୍ୟଦାନଂ ସମାଚରେତ୍ ତତୋ ବ୍ରାହ୍ମଣଭୋଜନଂ ଇତି
କର୍ଣ୍ଣବେଧଃସମାପ୍ତଃ । ୯ ।

---

## ଅଥୋପନୟନଂ

ତତ୍ରଶୁଦ୍ଧ ସମୟେ ରବି,ଗୁରୁ,ଚନ୍ଦ୍ର,ତାରାଦିଶୁଦ୍ଧୌକନ୍ୟ-

---

ରକ୍ତାଦଦୋଷ ରହିତ ଥିବ ପୂର୍ବାହ୍ନରେ ପିତା ଅଥବା ଅନ୍ୟ
କେହି ବ୍ରାହ୍ମଣ ପୂର୍ବକୁ ମୁଖକରି ବସି କୁମାର ବସ୍ତ୍ରରେ ଗୁଡ଼ଦେଇ
"ଓଁ ଭଦ୍ରଂ କର୍ଣ୍ଣେଭି" ମନ୍ତ୍ରଦ୍ୱାରା ଦକ୍ଷିଣ କର୍ଣ୍ଣକୁ ଅଭିମନ୍ତ୍ରିତ
କରିବ । ଏବଂ "ଓଁ ବକ୍ଷନ୍ତି" ମନ୍ତ୍ରପଢି ବାମକର୍ଣ୍ଣକୁ ଅଭି ମନ୍ତ୍ରିତ
କରି କର୍ଣ୍ଣର ମଧ୍ୟ ପ୍ରଦେଶ ଦେଖି ଉକ୍ତ କର୍ଣ୍ଣଦ୍ୱୟ ନାପିତଦ୍ୱାରା
ଫୋଡ଼ାଇବ । ଲୋକାଚାରବଶତଃ ସେହି ସମୟରେ କୁମାରକୁ
ମଧୁରଦ୍ରବ୍ୟ ଦେବ । ତପରେ ବ୍ରାହ୍ମଣ ଭୋଜନ କରାଇବ ।

କର୍ଣ୍ଣ ବେଧ ସମାପ୍ତ ।

---

## ଉପନୟନ ।

ଏହି କର୍ମ ଶୁଦ୍ଧକାଳରେ, ରବି ବୃହସ୍ପତି ଚନ୍ଦ୍ର ଏବଂ ତାରା ଶୁଦ୍ଧ

ତୋଗର୍ଭାଷ୍ଟମେଽବ୍ଦେ ବାନୂନେ ଷୋଡଶାଦ୍‌ବର୍ଷାଭ୍ୟ-
ନ୍ତରେ ବ୍ରହ୍ମବର୍ଚ୍ଚସକାମସ୍ୟ ପଞ୍ଚମେଽବ୍ଦେ ଯୁନ୍ନ ଆପୂର୍ଯ୍ୟମା
ଣପକ୍ଷେଽନଧ୍ୟାୟଷଷ୍ଠୀରିକ୍ତାବ୍ୟତିରିକ୍ତଶୌରବ ଗୁରୁଶୁକ୍ରା-
ନ୍ୟତମବାରେ ମଧ୍ୟାହ୍ନାତ୍ପୂର୍ବାକ୍ କୁମାର ପିତାଭ୍ୟୁଦୟି-
କେଽକୃତେ ତଦଭାବେ ଅଗ୍ନ୍ୟେର୍ଣୈବକୃତେ ବ୍ରାହ୍ମଣାନ୍ମାଣବ-
କଞ୍ଚ ଭୋଜୟିତ୍ୱା ସଶିଖକୃତକ୍ଷୌରଂ ସ୍ନାନାନନ୍ତରଂ
ଯଥାଲଂକୃତ୍ୱା ବହିଃଶାଲାୟାଂ ରୂଷକେଶଶର୍କ୍କରାଦି ଶୂନ୍ୟ-
ପବିତ୍ରଭୂମୌ ଅଗ୍ନେର୍ଯୋଽଗ୍ନି ସ୍ଥାପନଂ କୁର୍ଯ୍ୟାତ୍ ତନ୍ହସ୍ତ
ମାତ୍ରପରିମିତ ଚତୁରସ୍ର ଭୂମି କୁଶକରଣକ ସମୂହନାନନ୍ତରଂ
ଗୋମୟୋଦକେନୋପଲେପ୍ୟ ସ୍ରୁବମୂଲେନ ପ୍ରାଗଗ୍ରପ୍ରାଦେ-
ଶମାତ୍ରମୁତ୍ତରୋତ୍ତର କ୍ରମେଣ ତ୍ରିରୁଲ୍ଲିଖ୍ୟ ଉଲ୍ଲେଖନ

---

ଥିବା ଦିବସରେ ଜନ୍ମଠାରୁ ଗର୍ଭାଷ୍ଟମ ବର୍ଷରେ ଅଥବା ଷୋଡଶ
ବର୍ଷ ମଧ୍ୟରେ " ବ୍ରହ୍ମବର୍ଚ୍ଚସ୍କାମୀ " ପଞ୍ଚମ ବର୍ଷରେ ଶୁକ୍ଳପକ୍ଷ ଅନ-
ଧ୍ୟାୟ ଷଷ୍ଠୀ ରିକ୍ତାଦି ଭିନ୍ନ ତିଥିରେ ରବି ଗୁରୁ, ଶୁକ୍ର ଏହି ବାର
ମାନଙ୍କ ମଧ୍ୟରୁ କୌଣସି ଏକ ବାରରେ ମଧ୍ୟାହ୍ନ ପୂର୍ବରୁ କୁମାରର
ପିତା ମାତୃ ପୂଜା, ଆଭ୍ୟୁଦୟିକ ଶ୍ରାଦ୍ଧ କରିବ ଯଦି ପିତା ନଥାଏ
ତେବେ ଆଚାର୍ଯ୍ୟ କରିବ ( କିନ୍ତୁ ଉପନୟନ ସଂଯୋଗେ ନିର୍ଦ୍ଦିଷ୍ଟ
ଥିବା କାଳ ଅତି ବାହିତ ହୋଇଥିଲେ ଅଗ୍ରେ ତନ୍ନିମିତ୍ତ ଅନା
ଦେଶ ପ୍ରାୟଶ୍ଚିତ୍ତ କରି ମାତୃ ପୂଜାଦି କରିବ । ) ବ୍ରାହ୍ମଣମାନଙ୍କ
ସଙ୍ଗରେ ମାଣବକକୁ ଭୋଜନ କରାଇ ଯଥାବିଧି ଶିଖା ରଖି
କ୍ଷୌର ଓ ସ୍ନାନ କରାଇବ ଏବଂ ଯଥାଶକ୍ତି ଅଲଙ୍କାର ପିନ୍ଧାଇବ
ତତ୍ପରେ ତୁଷ ( ତଷ ) ଲୋମ, ଗୁଡ଼ ନଥିବା ବହିଃ ଶାଳରେ
ଅଗ୍ନ୍ୟର୍ଥ ହସ୍ତ ପରିମିତ ଚତୁରସ୍ର ଭୂମି କୁଶସମୂହଦ୍ୱାରା ମାର୍ଜନକରି
ଗୋମୟ ଜଳରେ ଲେପନ କରିବେ ପରେ ସ୍ରୁବମୂଳରେ ପୂର୍ବା-
ଗ୍ରବର୍ତ୍ତୀ ପ୍ରାଦେଶପରିମିତ ଇଞ୍ଚିଗୋଟି ରେଖା ଉତ୍ତର ୨

ତ୍ରମେଣାନାମିକାଙ୍ଗୁଷ୍ଠାଭ୍ୟାଂ  ମୃଦମୁଦ୍ଧୃତ୍ୟ  ଜଲେନାଭ୍ୟୁକ୍ଷ୍ୟ
ନବୀନକାଂସ୍ୟପାତ୍ରେଣାଗ୍ନିମାନୀୟ  ସ୍ୱାଭି ମୁଖଂ  ନିଦଧ୍ୟାତ୍
ତତଃ କୁମାର ମାଚାର୍ଯ୍ୟଃ ଶିଷ୍ୟଦ୍ୱାରାଗ୍ନେଃ  ପଶ୍ଚାଦ୍ଦକ୍ଷିଣପାର୍ଶ୍ୱେ ଽ
ବସ୍ଥାପୟେତ୍ ତତଃକୁମାରଂବଦ୍ଧାଂଜଲିଂସଂବୋଧୟେତ ଓଁବ୍ରହ୍ମଚର୍ଯ୍ୟ
ମାଗାମିତିବ୍ରୂହି  ଇତିପ୍ରୈଷାନନ୍ତରଂ ଓଁବ୍ରହ୍ମଚର୍ଯ୍ୟମାଗାମିତି
କୁମାରଅହ  ତତଃ ଓଁ ବ୍ରହ୍ମଚାର୍ଯ୍ୟସାନୀତିବ୍ରୂହି ଆଚାର୍ଯ୍ୟେଣୋ-
କ୍ତେ ଓଁବ୍ରହ୍ମଚାର୍ଯ୍ୟସାନୀତି କୁମାରଅହ  ଅଥମାଣବକମାଚାର୍ଯ୍ୟୋ
ବାସଃ ପରିଧାପୟେତ  ତତ୍ରଅଚାର୍ଯ୍ୟପଠନୀୟୋମନ୍ତ୍ରଃ  ଓଁ ଯେ-
ନେନ୍ଦ୍ରାୟବୃହସ୍ପତିର୍ବାସଃ ପର୍ଯ୍ୟଦଧାମୃତଂ ତେନତ୍ୱାପରି ଦଧାମ୍ୟା
ଯୁଷେଦୀର୍ଘାୟୁତ୍ୱାୟବଲାୟବର୍ଚ୍ଚସେ ତତୋମାଣବକସ୍ୟ  ଦ୍ୱିରା-
ଚମନଂ  ଅଥ ମାଣବକସ୍ୟବେଷ୍ଟନ ଦ୍ରବ୍ୟେଣତତ୍ପୃ ବଲ ଗ୍ରନ୍ଥି-

---

ଦିଗକୁ ଲେଖି ଅନାମିକା ଅଙ୍ଗୁଷ୍ଠ ଏ ଦୁଇ ଅଙ୍ଗୁଳୀରେ ମୃତ୍ତିକା
ଉଦ୍ଧୃତକର ଜଳ ସେଚନ କରିବ ।
ଏବଂ ନୂତନ କାଂସପାତ୍ରରେ ଅଗ୍ନି ଆଣି ଆପଣା ଆଡକୁ ମୁଖକରି-
ରଖିବ । ତଦନନ୍ତର ଆଚାର୍ଯ୍ୟ କୌଣସି ଶିଷ୍ୟଦ୍ୱାରା ମାଣ ବକକୁ
ଅଗ୍ନିଙ୍କର ପଶ୍ଚିମ ଏବଂ ଆପଣାର ଦକ୍ଷିଣ ଦିଗକୁ ବସାଇବ ।

ଏବଂ ବଦ୍ଧାଞ୍ଜଳୀ ହୋଇଥିବା କୁମାରକୁ ନିମ୍ନଲିଖିତ ପ୍ରକାର
ରେ ସମ୍ବୋଧନକରାଇବ ଯଥା ;

„ ଓଁ ବ୍ରହ୍ମ ଚର୍ଯ୍ୟ ମାଗାମି " ଏହିପରି କହିବୋଲ ପ୍ରଶ୍ନକଲ
ଉତ୍ତରୁ „ ଓଁ ବ୍ରହ୍ମ ଚର୍ଯ୍ୟ ମାଗାମି " ବୋଲିକୁମାର କହିବେ ।
ଏହିପରି " ଓଁ ବ୍ରହ୍ମ ଚର୍ଯ୍ୟ ସା ନୀତି „ ମନ୍ତ୍ରକୁମଧ୍ୟ କୁହାଇବ ।
ତତ୍ପରେ ଆଚାର୍ଯ୍ୟ " ଓଁ ଯେନେନ୍ଦ୍ରାୟ „ ମନ୍ତ୍ରପଢି କୁମାରକୁ ବସ୍ତ୍ର
ପିନ୍ଧାଇବେ । ତଦନନ୍ତର କୁମାରକୁ ଦୁଇଥର ଆଚମନକରାଇବେ
ଏବଂ କୁମାରର ପୂର୍ବଦକ୍ଷିଣ କ୍ରମରେ ମେଖଳାକୁ ତିନିବାର ବୁଲାଇ

ମୁଞ୍ଜାଂମେଖଲାମାଚାର୍ଯ୍ୟୋବଧ୍ନାତି । ତତ୍ରମାଣବକପଠନୀୟୋ-
ମନ୍ତ୍ରଃ ଇୟଂଦୁରୁକ୍ତଂ ପରିବାଧମାନାବର୍ଣ୍ଣଂପବିତ୍ରଂ ପୁନତୀମଆ
ଗାତ୍ ପ୍ରାଣାପାନାଭ୍ୟାଂ ବଲମାଦଧାନା ସ୍ୱସାଦେବୀ ସୁଭଗା-
ମେଖଲେୟଂ ଓଁ ଯୁବାସୁବାସାଃ ପରିବୀତଆଗାତ୍ ସଉଶ୍ରେୟାନ୍
ଭବତି ଜାୟମାନଃ ତଂଧୀରାସଃ କବୟଉନ୍ନୟନ୍ତିସ୍ୱାଧ୍ୟୋମନ
ସାଦେବୟନ୍ତ ଇତିବା ତତଆଚାର୍ଯ୍ୟୋଯଜ୍ଞୋପବୀତ ସହିତଭାଣ୍ଡା-
ଷ୍ଟକସ୍ୟ ବ୍ରାହ୍ମଣେଭ୍ୟୋଦତ୍ୱାତସ୍ମୈଦଦ୍ୟାମୁକ ଗୋତ୍ରଃ ସ୍ୱକୀୟୋ
ପନୟନ କର୍ମବିଷୟକସଂସ୍କାରପ୍ରାପ୍ତ୍ୟର୍ଥଂ ଇଦଂଭାଣ୍ଡାଷ୍ଟକସ୍ୟ
ସଯଜ୍ଞୋପବୀତଂ ସଦକ୍ଷିଣଂ ଯଥାନାମେତ ତତୋ ଯଜ୍ଞୋପବୀତଂ
ପରିଦଧାତିମାଣବକଃ ଓଁ ଯଜ୍ଞୋପବୀତମିତିମନ୍ତ୍ରସ୍ୟ ପରମେ-
ଷ୍ଠୀଋଷିର୍ଲିଙ୍ଗୋକ୍ତାଦେବତା ତ୍ରିଷ୍ଟୁପ୍ ଛନ୍ଦୋଯଜ୍ଞୋପବୀତ ପ-
ରିଧାନେବିନିୟୋଗଃ ଓଁ ଯଜ୍ଞୋପବୀତଂପରମଂ ପବିତ୍ରଂପ୍ରଜା-
ପତେର୍ଯତ୍ସହଜଂପୁରସ୍ତାତ୍ ଆୟୁଷ୍ୟମଗ୍ର୍ୟଂପ୍ରତି ମୁଞ୍ଚଶୁଭ୍ରଂ
ଯଜ୍ଞୋପବୀତଂବଲମସ୍ତୁତେଜଃ ଇତିମନ୍ତ୍ରେଣ ତତ ଐଣେୟ-
ମଜିନଂତୂଷ୍ଣୀଂପରିଧତ୍ତେ ତତୋମାଣବକକେଶ ପରିମିତପା-

---

ଯାହାର ଯେଉଁ ପର ପ୍ରବର ଥିବ ତଦନୁସାରେ ଗ୍ରନ୍ଥି ମୁଞ୍ଜକର ଅଗ୍ନି
ମେଖଳାକୁ ବାନ୍ଧିବ । “ଇୟଂଦୁରୁକ୍ତଂପରି ବାଧମାନା„ ଅଥବା
„ଯୁବାସୁବାସା” ମନ୍ତ୍ରକୁ ପଢିବେ ତଦନନ୍ତର ଶିଷ୍ୟାଚାର୍ଯ୍ୟବଶରୁ
ଯଜ୍ଞୋପବୀତ ସହିତ ୮ ଗୋଟିପାତ୍ର ଅମୁକଗୋତ୍ରାୟବାହ୍ୟ ଉଚ୍ଚା-
ରଣ କର ବ୍ରାହ୍ମଣଙ୍କୁ ଦାନଦେବ ※ । ତତ୍ପରେ “ଯଜ୍ଞୋପବୀତଂ„
ଏହିମନ୍ତ୍ରର ଋଷିଛନ୍ଦ ଓ ମନ୍ତ୍ରୋଚ୍ଚାରଣକର ମାଣବକ ଯଜ୍ଞୋପବୀତ
ଲଗାଇବ । ଏବଂ କୃଷ୍ଣମୃଗ ଚର୍ମ୍ମ, ତୁନିହୋଇ ପରିଧାନକରିବ

---

※ ଏହି ଅଷ୍ଟଗୋଟିପାତ୍ର ଦାନ, କରିବାରୀତି ଏହି ପ୍ରଦେଶରେ
ଚଳୁନାହିଁ ।

ଳାଶଦଣ୍ଡମାଚାର୍ଯ୍ୟଃ ତୂଷ୍ଣୀଭର୍ଷ୍ଣେ ପ୍ରଯୁଚ୍ଛତି ତଂ ତଯୋମେଦ-
ଣ୍ଡଇତି ପ୍ରଜାପତିଋଷି ର୍ଦଣ୍ଡୋଦେବତାୟଜୁର୍ଦଣ୍ଡଗ୍ରହଣେ ବିନି-
ଯୋଗଃ ଯୋମେଦଣ୍ଡଃ ପରାପତଦ୍ବୈହାୟସୋଽଧିଭୂମ୍ୟାଂ ତମହଂ
ପୁନରାଦଦ ଆୟୁଷେ ବ୍ରହ୍ମଣେବ୍ରହ୍ମବର୍ଚ୍ଚସାୟ ଇତିମନ୍ତ୍ରେଣମା-
ଣବକୋଗୃହ୍ନାତି ତତଆଚାର୍ଯ୍ୟୋବାରିଣା ସ୍ୱାଞ୍ଜଲିଂ ପୂରୟିତ୍ୱା
କୁମାରସ୍ୟାଞ୍ଜଲିଂ ତେନୈବାଞ୍ଜଲିସ୍ଥଜଲେନ ପୂରୟେତ୍ ଓଁ ଆ-
ପୋହିଷ୍ଠା ମୟୋଭୁବ ସ୍ତାନଊର୍ଜ୍ଜେଦଧାତନ ମହେରଣାୟ
ଚକ୍ଷସେ ଓଁ ଯୋବଃ ଶିବତମୋରସ ସ୍ତସ୍ୟଭାଜୟତେହ-
ନଃ ଉଶତୀରିବମାତରଃ ଓଁ ତସ୍ମା ଅରଙ୍ଗମାମବୋ ଯସ୍ୟ
କ୍ଷୟାୟ ଜିନ୍ୱଥ ଆପୋଜନୟଥାଚନଃ ଇତି ତୃଗ୍‌ଭିଃ ତତଃ
ସୂର୍ଯ୍ୟମୁଦୀକ୍ଷସ୍ୱେତି ଆଚାର୍ଯ୍ୟପ୍ରେଷାନନ୍ତରଂ ଓଁ ତଚ୍ଚକ୍ଷୁ-
ର୍ଦେବହିତଂ ପୁରସ୍ତାଚ୍ଛୁକ୍ରମୁଚ୍ଚରତ୍ ପଶ୍ୟେମ ଶରଦଃ ଶତଂ
ଜୀବେମ ଶରଦଃ ଶତଂ ଶୃଣୁୟାମଶରଦଃ ଶତଂ ପ୍ରବ୍ରବାମ
ଶରଦଃ ଶତମଦୀନାଃ ସ୍ୟାମ ଶରଦଃ ଶତଂଭୂୟଶ୍ଚ ଶରଦଃ
ଶତାତ୍ ଇତ୍ୟନେନାଦିତ୍ୟଂ ପଶ୍ୟେତ୍ ଅଥ କୁମାରସ୍ୟ
ଦକ୍ଷିଣାଂସମଧିହୃଦୟଂ ଦକ୍ଷିଣହସ୍ତେନ ସ୍ପୃଶତ୍ୟାଚାର୍ଯ୍ୟଃ

---

ଏପରେ କୁମାରର ପାଦଠାରୁ କେଶପର୍ଯ୍ୟନ୍ତ ଉଚ୍ଚଥିବା ପଲାଶଦଣ୍ଡ
କୁ ଆଚାର୍ଯ୍ୟ ମୌନରୂପରେ ମାଣବକକୁ ଧରାଇବେ ମାଣବକ “ ଓଁ
ଯୋମେଦଣ୍ଡ ” ମନ୍ତ୍ରକୁ ତୂଷ୍ଣୀମ୍ଭାବ ଉଚ୍ଚାରଣକରି ଦଣ୍ଡଗ୍ରହଣ
କରିବ । ତାପରେ ଆଚାର୍ଯ୍ୟ ଜଳଦ୍ୱାରା ଅପଣା ଅଞ୍ଜଳୀ ପୂର୍ଣ୍ଣକରି
ସେହିଜଳଦ୍ୱାରା କୁମାରର ଅଞ୍ଜଳୀକୁ “ ଓଁ ଆପୋହିଷ୍ଠା ମୟୋ-
ଭୁବଃ ” ଏହିଋକ୍ ମାନଙ୍କପଢି ପୂର୍ଣ୍ଣକରିବ । ଏବଂ ସୂର୍ଯ୍ୟଙ୍କୁ ଦେଖ
ବୋଲି ମାଣବକକୁ କହିଲାରୁ ସେ “ ଓଁ ତଚ୍ଚକ୍ଷୁର୍ଦେବହିତଂ ” ମନ୍ତ୍ର
ପଢି ଅଦିତ୍ୟଙ୍କୁ ଦେଖିବ । ଆଚାର୍ଯ୍ୟ କୁମାରର ଦକ୍ଷିଣ ସ୍କନ୍ଧ ଏବଂ

ଓଁ ମମବ୍ରତେତେ ହୃଦୟଂ ଦଧାମି ମମଚିତ୍ତମନୁଚିତ୍ତଂ ତେଅସ୍ତୁ
ମମ ବାଚମେକମନାଜୁଷସ୍ୱ ବୃହସ୍ପତିଷ୍ଟ୍ୱାନିଯୁ ନକ୍ତୁମହ୍ୟଂ
ଇତି ମନ୍ତ୍ରେଣ ତତଃ କୁମାରସ୍ୟ ଦକ୍ଷିଣହସ୍ତଂ ଗୃହୀତ୍ୱା
ତଂ ପୃଚ୍ଛତି କୋନାମାସି ଶ୍ରୀ ଅମୁକ ଶର୍ମାହଂଭୋଃ ଇତି
କୁମାର ଆହ କସ୍ୟ ବ୍ରହ୍ମଚାର୍ଯ୍ୟସୀତ୍ୟାଚାର୍ଯ୍ୟଃ ଭବତ
ଇତି କୁମାରଆହ ପୁନରାଚାର୍ଯ୍ୟୋ ଘଷତେ ଓଁ ଇନ୍ଦ୍ରସ୍ୟ
ବ୍ରହ୍ମଚାର୍ଯ୍ୟସ୍ୟ ଗ୍ନିରାଚାର୍ଯ୍ୟ ସ୍ତବାହ ମାଚାର୍ଯ୍ୟଃ ଶ୍ରୀ ଅମୁକ
ଶର୍ମନ୍ ଅଥ ମାଣବକ ବଦ୍ଧାଞ୍ଜଳିଂ ଦୂର୍ବାହସ୍ତଂ
ପ୍ରଦକ୍ଷିଣ ମୁପସ୍ଥାନଂ କାରୟିତ ଅଥାଚାର୍ଯ୍ୟୋ ମାଣବକଂ
ଭୂତେଭ୍ୟଃ ପରିଦଦାତି ତତ୍ର ଆଚାର୍ଯ୍ୟସ୍ୟ ମନ୍ତ୍ରପାଠଃ
ଓଁ ପ୍ରଜାପତୟେତ୍ୱା ପରିଦଦମୀତି ପ୍ରାଚ୍ୟାଂ ଓଁ ଦେବାୟତ୍ୱା
ସବିତ୍ରେ ପରିଦଦାମି ଇତିଦକ୍ଷିଣସ୍ୟାଂ ଓଁ ଅଦ୍ଭ୍ୟାସ୍ତ୍ୱୌଷଧୀ-
ଭ୍ୟଃ ପରିଦଦାମି ଇତି ପ୍ରତୀଚ୍ୟାଂ ଓଁ ଦ୍ୟାବା ପୃଥିବୀଭ୍ୟାଂ
ତ୍ୱାପରି ଦଦାମି ଇତିଉଦୀଚ୍ୟାଂ ଓଁ ବିଶ୍ୱେଭ୍ୟସ୍ତ୍ୱା ଦେବେ-
ଭ୍ୟଃ ପରିଦଦାମି ଇତ୍ୟଧଃ ଓଁ ସର୍ବେଭ୍ୟସ୍ତ୍ୱା ଭୂତେଭ୍ୟଃ

---

ହୃଦୟକୁ „ ମମବ୍ରତେତେ ” ମନ୍ତ୍ରପଢି ସ୍ପର୍ଶକରିବେ ତଦନନ୍ତର କୁମା
ରର ଦକ୍ଷିଣହସ୍ତକୁ ଧରି “ କୋନାମାସି ,, ଏହିପ୍ରଶ୍ନ ପଚାରିଲା ଉତ୍ତ-
ରୁ „ ଭୋ ! ଶ୍ରୀ ଅମୁକ ଶର୍ମାହଂ ” ବୋଲିକହିବେ ଆଚାର୍ଯ୍ୟ
“ କସ୍ୟବ୍ରହ୍ମଚାର୍ଯ୍ୟସି ,, ବୋଲି ପଚାରିଲେ କୁମାର „ ଭବତଃଇତି ”
ବୋଲି କହିବେ । ପୁନଶ୍ଚ ଆଚାର୍ଯ୍ୟ କୁମାରକୁ ଇନ୍ଦ୍ରସ୍ୟ ବ୍ରହ୍ମଚାର୍ଯ୍ୟସି
ଇତ୍ୟାଦି ବୋଲି କହିବେ ତତ୍ପରେମଧ୍ୟ ଏହି ଉପନୟନ
କାର୍ଯ୍ୟରେ “ ତବାହ ମାଚାର୍ଯ୍ୟ ଶ୍ରୀ ଅମୁକ ଶର୍ମନ୍ ,, ବୋଲିକହି-
ବେ ଏବଂ ମାଣବକକୁ “ ଓଁ ପ୍ରଜାପତୟେ ପରିଦଧାମି ,, ଠାରୁ
ଆରମ୍ଭକରି “ ଓଁ ସର୍ବେଭ୍ୟସ୍ତ୍ୱା ,, ପର୍ଯ୍ୟନ୍ତପଢି କୁମାରକୁ ପୂର୍ବାଦି

ପରିଦଦାମ୍ୟଗ୍ନେୈ ଇତ୍ୟୁକ୍ତ୍ୱା ତତୋଽଗ୍ନିଂ ପ୍ରଦକ୍ଷିଣୀ
କୃତ୍ୟ ଅଗ୍ନେର୍ଦକ୍ଷିଣ ଦିଶି ଉପବିଶତି ମାଣବକଃ ତତଃ
ପୁଷ୍ପ ଚନ୍ଦନ ତାମ୍ବୂଲ ବାସାଂସ୍ୟାଦାୟ ତତଃ ଓଁ ଅଦ୍ୟ
କର୍ତ୍ତବ୍ୟୋପନୟନହୋମକର୍ମଣି କୃତାକୃତାବେକ୍ଷଣରୂପ
ବ୍ରହ୍ମକର୍ମକର୍ତ୍ତୁଂ ଅମୁକଗୋତ୍ରମମୁକଶର୍ମାଣଂ ବ୍ରାହ୍ମଣମେଭିଃ
ପୁଷ୍ପ ଚନ୍ଦନ ତାମ୍ବୂଲ ବାସୋଭିଃ ବ୍ରହ୍ମତ୍ୱେନ ତ୍ୱାମହଂ ବୃଣେ
ଇତି ବ୍ରାହ୍ମଣଂ ବୃଣୁୟାତ୍ ଓଁ ବୃତୋଽସ୍ମୀତି ପ୍ରତିବଚନଂ
ପୁଷ୍ପ ଚନ୍ଦନ ତାମ୍ବୂଲ ବସ୍ତ୍ରାଣ୍ୟାଦାୟ ଅଦ୍ୟ କର୍ତ୍ତବ୍ୟୋପନ-
ୟନ କର୍ମଣି ହୋତୃକର୍ମକର୍ତ୍ତୁଂ ଅମୁକଗୋତ୍ର ମମୁକ
ଶର୍ମାଣଂ ବ୍ରାହ୍ମଣମେଭିଃ ପୁଷ୍ପ ଚନ୍ଦନ ତାମ୍ବୂଲ ବାସୋଭିଃ
ହୋତୃତ୍ୱେନ ତ୍ୱାମହଂ ବୃଣେ ଇତି ହୋତାରଂ ବୃଣୁୟାତ୍
ବୃତୋଽସ୍ମୀତି ପ୍ରତିବଚନଂ ଓଁ ଯଥାବିହିତଂ କର୍ମ କୁର୍ବିତ୍ୟଗ୍ନେୈ
ଶୋକ୍ତେ ଓଁକରବାଣୀତି ବ୍ରାହ୍ମଣୋବଦେତ୍ ତତୋଽଗ୍ନେ
ର୍ଦକ୍ଷିଣତଃଶୁଦ୍ଧମାସନଂ ଦତ୍ତ୍ୱା ତଦୁପରି ପ୍ରାଗଗ୍ରାନ୍ କୁଶାନାସ୍ତୀର୍ଯ୍ୟ

---

ଦେଇ ଅଗ୍ନିଙ୍କୁ ପ୍ରଦକ୍ଷିଣକରିବେ। ତତ୍ପରେ ମାଣବକ ଅଗ୍ନିଙ୍କୁ ପ୍ରଦକ୍ଷିଣ
କରି ଅଗ୍ନିଙ୍କ ଦକ୍ଷିଣପାର୍ଶ୍ୱରେ ବସିବେ।

ତହିଁଉତ୍ତାରୁ ପୁଷ୍ପ, ଚନ୍ଦନ, ତାମ୍ବୂଲ, ବସ୍ତ୍ରାଦି ଗ୍ରହଣକରି " ଅଦ୍ୟ-
କର୍ତ୍ତବ୍ୟୋପନୟନ ହୋମକର୍ମଣି ,, ବାକ୍ୟପଢି ବ୍ରହ୍ମାଙ୍କୁ ବରଣକରିବ
" ଓଁ ବୃତୋଽସ୍ମୀତି,,ବୋଲି ବ୍ରହ୍ମା ପ୍ରତିବଚନକହିବେ। ତଦନନ୍ତର
ପୂର୍ବୋକ୍ତ ପୁଷ୍ପ ଚନ୍ଦନାଦି ଗ୍ରହଣ କରିତଃ " ଅଦ୍ୟକର୍ତ୍ତବ୍ୟୋପନୟନ
କର୍ମଣି ବାକ୍ୟପଢି ହୋତାଙ୍କୁ ବରଣକରିବ। ହୋତା ବୃତୋଽସ୍ମୀତିପ୍ରତି
ବଚନ କହିବେ। ଅଗ୍ନିର୍ଯ୍ୟ ଯଥାବିହିତ କର୍ମ କୁରୁ " ବୋଲି
ହୋତାଙ୍କୁ କହିଲାରୁ କରବାଣୀତି ବୋଲି ହୋତାକହିବେ ତତ୍ପରେ
ଅଗ୍ନିଙ୍କର ଦକ୍ଷିଣଦିଗରେ ଶୁଦ୍ଧଆସନଦେଇ ତଦୁପରି ପୂର୍ବାଗ୍ରୁ

ବ୍ରାହ୍ମଣମଗ୍ନି ପ୍ରଦକ୍ଷିଣଂ କାରୟିତ୍ୱା ୧ ଅଗ୍ନିଂହୋମକର୍ମଣି ତ୍ୱଂମେ-
ବ୍ରହ୍ମା ଭବେତ୍ୟଭିଧାୟ ଭବାମୀତି ତେନୋକ୍ତେ ତଦୁପରି
ବ୍ରାହ୍ମଣମୁଦଙ୍ମୁଖମୁପବେଶ୍ୟ ତତଃପ୍ରଣୀତାପାତ୍ରଂ ପୁରତଃ କୃ-
ତ୍ୱା ବାରଣପରିପୂର୍ଣ୍ଣ କୁଶୈରାଚ୍ଛାଦ୍ୟ ବ୍ରହ୍ମଣୋ ମୁଖମବ-
ଲୋକ୍ୟ ୧ ଅଗ୍ନେରୁତ୍ତରତଃ କୁଶୋପରି ନିଦଧ୍ୟାତ୍ ତତଃ
ପରିସ୍ତରଣଂ ବର୍ହିଷଶ୍ଚତୁର୍ଥ ଭାଗ ମାଦାୟ ୧ ଅଗ୍ନ୍ୟାଦୀଶାନାନ୍ତଂ
ବ୍ରହ୍ମଣୋ ୧ ଗ୍ନିପର୍ଯ୍ୟନ୍ତଂ ନୈର୍ଋତ୍ୟାଦ୍ବାୟବ୍ୟାନ୍ତଂ ଅଗ୍ନିତଃ
ପ୍ରଣୀତାପର୍ଯ୍ୟନ୍ତଂ ତତୋ ୧ ଗ୍ନେରୁତ୍ତରତଃ ପଶ୍ଚିମଦେଶେ
ପବିତ୍ରଚ୍ଛେଦନାର୍ଥଂ କୁଶତ୍ରୟଂ ପବିତ୍ରାର୍ଥଂ ସାଗ୍ରମନନ୍ତର୍ଗର୍ଭ

---

ଅଗ୍ରବୋଇ ଥିବା ନେ ଯେ ହି କି ବ ଦକ୍ଷ ଇ ବ୍ରହ୍ମଙ୍କୁ ଅଗ୍ନି ପ୍ରଦକ୍ଷିଣ
କରାଇ " ଅଗ୍ନିନ୍ ହୋମକର୍ମାଣି ତୁଂମେ ବ୍ରହ୍ମ ଭବ ,, ବୋଲି-
କହିବ । ବ୍ରହ୍ମା ତାହାଶୁଣି " ଭବାମୀତି ,, ବୋଲି କହିଲାରୁ ତାଙ୍କୁ
ଉକ୍ତ ଆସନରେ ଉତ୍ତରମୁଖକରି ବସାଇବ । ତତ୍ପରେ ପ୍ରଣୀତା
ପାତ୍ରକୁ ଆଗରେ ରଖି ଜଳପୂର୍ଣ୍ଣ କରି କୁଶମାନଙ୍କଦ୍ୱାରା ଆଚ୍ଛାଦନ
କରିବ ତତ୍ପରେ ବ୍ରହ୍ମଙ୍କ ମୁଖକୁ ଅବଲୋକନକରିତଃ ଅଗ୍ନିଙ୍କର
ଉତ୍ତର ଦିଗରେ କୁଶୋପରି ସେପାତ୍ରକୁ ରଖିବ ।

ତଦନନ୍ତରରୁ ପରିସ୍ତରଣ କରିବ । ତାହାର କ୍ରମଯଥା ;

କୁଶର ଚତୁର୍ଥଭାଗ ଅଥବା ଗୃହ୍ୟଜାତି ମତେ କୁଶମୁଷ୍ଟି ଆଣି ଅଗ୍ନି
କୋଣଠାରୁ ଐଶାନ୍ୟ କୋଣ ପର୍ଯ୍ୟନ୍ତ, ବ୍ରହ୍ମଙ୍କଠାରୁ ଅଗ୍ନିକୋଣ
ପର୍ଯ୍ୟନ୍ତ ନୈର୍ଋତ କୋଣଠାରୁ ବାୟୁକୋଣ ପର୍ଯ୍ୟନ୍ତ ପରିସ୍ତରଣ
କରିବ ଅଥବା ଅସ୍ମଦ୍ଦେଶୀୟ ଆଚାରାନୁସାରେ ପୂର୍ବରେ ଉତ୍ତରାଗ୍ର
ଦକ୍ଷିଣେ ପୂର୍ବାଗ୍ର ପଶ୍ଚିମେ ଉତ୍ତରାଗ୍ର ଉତ୍ତରରେ ପୂର୍ବାଗ୍ର ଏହିପ୍ର
କାର ପରିସ୍ତରଣ କରିବ । ତଦନନ୍ତର ଅଗ୍ନିଙ୍କର ଉତ୍ତର ପଶ୍ଚିମ
କୋଣରେ ପବିତ୍ରଚ୍ଛେଦନ ଲାଗି ତିନଗୋଟି କୁଶ ; ପବିତ୍ରକରିବା

କୁଶପତ୍ରଦ୍ୱୟଂ ପ୍ରୋକ୍ଷଣୀପାତ୍ରଂ ଆଜ୍ୟସ୍ଥାଲୀ ସଂମାର୍ଜ୍ଜିନାର୍ଥଂ କୁଶାଃ ଉପଯମନକୁଶାଃ ସମିଧସ୍ତିସ୍ରଃ ସ୍ରୁବଃ ଆଜ୍ୟଂ ଷଟ୍ ପଞ୍ଚାଶଦୁତ୍ତର ଶତମୁଷ୍ଟିଶତ ଦ୍ୱୟା ବଚ୍ଛିନ୍ନାମ ତଣ୍ଡୁଲ ପୂର୍ଣ୍ଣପାତ୍ରଂ ପବିତ୍ର ଛେଦନ କୁଶାନାଂ ପୂର୍ବପୂର୍ବଦିଶି ନିମେଣା ସାଦନାୟଂ ତତଃପବିତ୍ରଚ୍ଛେଦନକୁଶୈଃପବିତ୍ରେଚ୍ଛିତ୍ୱା ସପବିତ୍ରକରେଣ ପ୍ରଣୀତୋଦକଂତ୍ରିଃ ପ୍ରୋକ୍ଷଣୀପାତ୍ରେନିଧାୟ ଅନାମିକାଂଗୁଷ୍ଠାଭ୍ୟାଂଗୃହୀତ ପବିତ୍ର ଭ୍ୟାଂତଜ୍ଜଲଂ ତ୍ରିରୁତ୍କ୍ଷିପ୍ୟ ପ୍ରଣୀତୋଦକେନ ପ୍ରୋକ୍ଷଣୀଂ ନିରଭିଷିଚ୍ୟ ପ୍ରୋକ୍ଷଣୀଜଲେନାସାଦିତ ବସ୍ତୁସେଚନଂକୃତ୍ୱାଽଗ୍ନି ପ୍ରଣୀତୟୋର୍ମଧ୍ୟେ ପ୍ରୋକ୍ଷଣୀପାତ୍ରଂ ନିଦଧ୍ୟାତ୍ ଆଜ୍ୟସ୍ଥାଲ୍ୟାମାଜ୍ୟନିର୍ବାପଃ ଅଧିଶ୍ରୟଣଂ ତତଃ

---

ଲାଗି ଧାର ଅର୍ଥାତ୍ ଅଚ୍ଛିଦ୍ର ଏବଂ ଗର୍ଭରେ ଆଉ କ୍ଷୁଦ୍ର କୁଶନଥିବା କୁଶପତ୍ରଦ୍ୱୟ ପ୍ରୋକ୍ଷଣୀପାତ୍ର ସମ୍ମାର୍ଜ୍ଜିନାର୍ଥ କୁଶ, ଉପଯମନାର୍ଥ କୁଶ ତିନିଗୋଟିସମିଧ ସ୍ରୁବ, ଘୃତ, ଆଉ୍ୟର୍ଘ୍ୟ ହସ୍ତରେ ୨୫୬ ମୁଷ୍ଟି ତଣ୍ଡୁଲ ଦ୍ୱାରା ପୂର୍ଣ୍ଣ ହୋଇଥିବା ପାତ୍ରଟେ। ୧ ୨। ଏହିସମସ୍ତଦ୍ରବ୍ୟ ପବିତ୍ରଛେଦନ ନିମନ୍ତେ ସ୍ଥାପିତ ହୋଇଥିବା କୁଶମାନଙ୍କର ପୂର୍ବ ୨ ଦିଗରେ କ୍ରମିକ ରଖିବ। ତହିଁଉତ୍ତାରୁ ପବିତ୍ର ଛେଦନନିମନ୍ତେ ଥିବା କୁଶମାନଙ୍କଦ୍ୱାରା ପବିତ୍ରଦ୍ୱୟ ଛେଦନକରି ସପବିତ୍ରହସ୍ତରେ ପ୍ରଣୀତା ଜଳକୁ ତିନିବାର ପ୍ରୋକ୍ଷଣୀପାତ୍ରରେ ପକାଇ ଅନାମିକା ଓ ଅଙ୍ଗୁଷ୍ଠ ଏହିଦୁଇ ଅଙ୍ଗୁଳିରେ ପବିତ୍ରଦ୍ୱୟ ଗ୍ରହଣକରି ସେହିଜଳରୁ କିଛି ୨ ତିନିବାରନେଇ ଊର୍ଦ୍ଧ୍ୱକୁ ପକାଇ; ପ୍ରଣୀତାଜଳରେ ପ୍ରୋକ୍ଷଣୀପାତ୍ରକୁ ତିନିଥର ସେଚନକରିବ। ପ୍ରୋକ୍ଷଣୀସ୍ଥିତଜଳଦ୍ୱାରା ଆସାଦିତ ପଦାର୍ଥମାନଙ୍କୁ ସେଚନକରି ଅଗ୍ନି ପ୍ରଣୀତା ଏହିଦୁହିଙ୍କମଧ୍ୟରେ ସେହିପାତ୍ରକୁ ରଖିବ। ଆଜ୍ୟସ୍ଥାଲୀରେ ଘୃତରଖି ସେପାତ୍ରକୁ ଅଗ୍ନିରେ ବସା-

କୁଶଂପ୍ରକ୍ଷାଲ୍ୟାଜ୍ୟୋପରି ପ୍ରଦକ୍ଷିଣଂଭ୍ରାମୟିତ୍ୱା ବହ୍ନୌତତ୍-
ପ୍ରକ୍ଷିପ୍ୟସ୍ରୁବଂବହିଃ ପରିତପ୍ୟ ସଂମାର୍ଜ୍ଜନକୁଶାନାମଗ୍ରୈର-
ନ୍ତରତୋମୂଲୈର୍ବାହ୍ୟତଃ ସ୍ରୁବଂସମ୍ମୃଜ୍ୟ ପ୍ରଣୀତୋଦକେନାଭ୍ୟୁ-
କ୍ଷ୍ୟପୁନ ସ୍ତ୍ରିଃପ୍ରତପ୍ୟ ଦକ୍ଷିଣତୋନିଦଧ୍ୟାତ୍ ତତଆଜ୍ୟମଗ୍ନେ-
ରବତାର୍ଯ୍ୟବହିଃ ପ୍ରୋକ୍ଷଣୀବଦୁତ୍ପୂୟାବେକ୍ଷ୍ୟସନ୍ତ୍ୟପଦ୍ରବ୍ୟେତନ୍ନି-
ରସନଂକୃତ୍ୱା ପୁନଃପ୍ରୋକ୍ଷଣ୍ୟୁତ୍ପବନଂ ତତଉତ୍ଥାୟୋପୟମନ
କୁଶାନ୍ୱାମହସ୍ତେକୃତ୍ୱା ପ୍ରଜାପତିଂମନସାଧ୍ୟାତ୍ୱା ତୂଷ୍ଣୀଂଘୃତାକ୍ତା-
ସ୍ତିସ୍ରଃ ସମିଧଃ ପ୍ରକ୍ଷିପେତ୍ ଉପବିଶ୍ୟସପବିତ୍ର ପ୍ରୋକ୍ଷଣ୍ୟୁଦକେନ
ପ୍ରଦକ୍ଷିଣକ୍ରମେଣ ଗ୍ନିଂପର୍ଯ୍ୟୁକ୍ଷ୍ୟ ପ୍ରଣୀତାପାତ୍ରେ ପବିତ୍ରେନିଧାୟ

---

ଇବ । ତତ୍ପରେ ଏକ ଗୋଟିକୁଶ ଅଗ୍ନିରେ ଜାଳି ଘୃତକୁ ପ୍ରଦକ୍ଷିଣ
କରାଇ ପୋଡ଼ାଜଳୁଥିବା କୁଶକୁ ଅଗ୍ନିରେ ପକାଇବ । ତଦନନ୍ତର
ସ୍ରୁବକୁ ତିନିବାର ତତାଇ ସମ୍ମାର୍ଜ୍ଜନ କରିବା ଲାଗି ରଖାହୋଇଥିବା
କୁଶମାନଙ୍କର ଅଗ୍ରରେ ଅଗ୍ର ପ୍ରଦେଶ, ମଧ୍ୟରେ ମଧ୍ୟ, ମୂଳରେ
ମୂଳପ୍ରଦେଶ ସମ୍ମାର୍ଜ୍ଜନ କରି ପ୍ରଣୀତାଜଳଦ୍ୱାରା ସେଚନ କରିବ । ପୁନଶ୍ଚ
ସ୍ରୁବକୁ ତିନିବାର ତତାଇ ଆପଣାର ଦକ୍ଷିଣପାଖରେ ରଖିବ ।
ତତ୍ପରେ ଘୃତପାତ୍ରକୁ ଅଗ୍ନିରୁ ଓହ୍ଲାଇ ପ୍ରୋକ୍ଷଣୀପାତ୍ରକୁ ଦେଖିଲା-
ପରି ତାକୁ ତିନିବାର ଦେଖିବ ତହିଁଉତ୍ତାରୁ ଅବଲୋକନ କରି ତହିଁ-
ରେ ଅପବିତ୍ର ଦ୍ରବ୍ୟଥିଲେ ବାହାର କରିଦେବ । ପୁନଶ୍ଚ ପ୍ରୋକ୍ଷଣୀ
ପାତ୍ରକୁ ଦେଖିବ ଅନନ୍ତର ଗାତ୍ରୋତ୍ଥାନ ପୂର୍ବକ ଉପଯମନ କୁଶ
ମାନଙ୍କୁ ବାମହସ୍ତରେ ଧରି ପ୍ରଜାପତିଙ୍କୁ ମନରେ ଧ୍ୟାନକରି ତଃ ମୌନ-
ଭାବରେ ତିନିଗୋଟି ସମିଧ ଘୃତରେ ବୁଡ଼ାଇ ଅଗ୍ନିରେ ପକାଇବ
ତତ୍ପରେ ଆପଣା ଆସନରେ ବସି ସପବିତ୍ର ପ୍ରୋକ୍ଷଣୀ ଜଳକୁ ଅଗ୍ନି
ପ୍ରଦକ୍ଷିଣ କରାଇ ତହିଁରେ ସେଚନ କରିବ । ପ୍ରଣୀତାପାତ୍ରରେ ପବିତ୍ର

ଯାହତଦକ୍ଷିଣଜାନୁଃବ୍ରହ୍ମଣାନ୍ୱାରବ୍ଧଃସମିଦ୍ଧତମେଽଗ୍ନୌସ୍ରୁବେ-
ଣାଜ୍ୟାହୁତୀର୍ଜୁହୋତି ତତ୍ରାହୁତିଦାନାନନ୍ତରଂ ସ୍ରୁବାବସ୍ଥି-
ତଘୃତଶେଷସ୍ୟ ପ୍ରୋକ୍ଷଣୀପାତ୍ରେପ୍ରକ୍ଷେପଃ ଓଁପ୍ରଜାପତୟେସ୍ୱାହା
ଇଦଂ ପ୍ରଜାପତୟେ ଇତିମନସା ଓଁ ଇନ୍ଦ୍ରାୟସ୍ୱାହା ଇଦମି-
ନ୍ଦ୍ରାୟଇତ୍ୟାଘାରୌ ଓଁ ଅଗ୍ନୟେସ୍ୱାହା ଇଦମଗ୍ନୟେ ଓଁ ସୋ
ମାୟସ୍ୱାହା ଇଦଂସୋମାୟ ଇତ୍ୟାଜ୍ୟଭାଗୌ ଓଁ ଭୂଃସ୍ୱାହା
ଇଦମଗ୍ନୟେ ଓଁ ଭୁବଃସ୍ୱାହା ଇଦଂବାୟବେ ଓଁ ସ୍ୱଃସ୍ୱାହା
ଇଦଂସୂର୍ଯ୍ୟାୟ ଏତାମହାବ୍ୟାହୃତୟଃ ଓଁ ତ୍ୱନ୍ନୋଅଗ୍ନେବରୁ-
ଣସ୍ୟ ବିଦ୍ୱାନ୍ଦେବସ୍ୟହେଡ଼ୋଅବୟାସିସୀଷ୍ଠାଃ ଯଜିଷ୍ଠୋବ-
ହ୍ନିତମଃ ଶୋଶୁଚାନୋ ବିଶ୍ୱାଦ୍ୱେଷାଂସିପ୍ରମୁମୁଗ୍ଧ୍ୟସ୍ମତ୍ ସ୍ୱାହା
ଇଦମଗ୍ନିବରୁଣାଭ୍ୟାଂ ଓଁ ସତ୍ୱନ୍ନୋଅଗ୍ନେଽବମୋଭବୋତୀ-
ନେଦିଷ୍ଠୋଅସ୍ୟାଉଷସୋବ୍ୟୁଷ୍ଟୌ ଅବୟକ୍ଷ୍ୱନୋବରୁଣଂରରା-

---

ସ୍ୱୟଂରକ୍ଷି ଦକ୍ଷିଣ ଜାନୁଭୂମିରେ ମାଡିବସି ବ୍ରହ୍ମାଙ୍କଦ୍ୱାରା ସ୍ପୃଷ୍ଟହୋଇ
ପ୍ରଜ୍ୱଳିତଅଗ୍ନିରେ ସ୍ରୁବଦ୍ୱାରା ଘୃତାହୁତିହୋମ କରିବ ଏହିହୋମରେ
ଯଥାବିହିତ ଆହୁତିଦେଇ ସ୍ରୁବରେଥିବା ଅବଶିଷ୍ଟଘୃତକୁ ପ୍ରୋ-
କ୍ଷଣୀ ପାତ୍ରରେ ପକାଇବ । ଓଁ ପ୍ରଜାପତୟେ ସ୍ୱାହା ଇଦଂପ୍ରଜାପ-
ତୟେ ଓଁ ଇନ୍ଦ୍ରାୟ ସ୍ୱାହା ଇଦମିନ୍ଦ୍ରାୟବୋଲି ଆଘାରଦ୍ୱୟ ଏବ
ଅଗ୍ନୟେ ସ୍ୱାହା ଇଦମଗ୍ନୟେ "ଓଁ ସୋମାୟ ସ୍ୱାହା ଇଦ-
ସାମାୟ „ ବୋଲି ଆଜ୍ୟଭାଗ ଦ୍ୱୟଦେବ । ଓଁ ଭୂଃ ସ୍ୱାହା ଇଦଂ
ଅଗ୍ନୟେ ବୋଲି ଅଗ୍ନିଙ୍କୁ ଓଁ ଭୁବଃ ସ୍ୱାହା ଇଦଂ ବାୟବେବୋଲି
ବାୟୁଙ୍କୁ ଓଁ ସ୍ୱଃ ସ୍ୱାହା ଇଦଂ ସୂର୍ଯ୍ୟାୟ ବୋଲି ସୂର୍ଯ୍ୟଙ୍କୁ ହୋମକ-
ରିବ । ଏହିମାନଙ୍କ ମହାବ୍ୟାହୃତି ହୋମବୋଲାଯାଏ ।

" ଓଁ ତ୍ୱନ୍ନୋଅଗ୍ନେ „ ମନ୍ତ୍ରଟି ଇଦମଗ୍ନି ବରୁଣାଭ୍ୟାଂ ବୋଲି
ଅଗ୍ନିବରୁଣଙ୍କୁ ହୋମକରିବ । " ଓଁ ସତ୍ୱନ୍ନୋଅଗ୍ନେ „ ମନ୍ତ୍ରଟି

ଶୋବ୍ବୀହିମୃଡ଼ୀକଁସୁହବୋନଏଧିଃ ସ୍ୱାହା ଇଦମଗ୍ନି ବରୁଣା-
ଭ୍ୟାଂ ଓଁ ଅୟାଶ୍ଚାଗ୍ନେଽସ୍ୟନଭିଶସ୍ତି ପାଶ୍ଚସତ୍ୟମିତ୍ୱମୟା ଅସି
ଅୟାନୋଯଜ୍ଞଂବହାସ୍ୟୟାନୋଧେହିଭେଷଜଁ ସ୍ୱାହା ଇଦମ-
ଗ୍ନୟେ ଓଁ ଯେତେଶତଂବରୁଣଯେସହସ୍ରଂଯଜ୍ଞିୟାଃ ପାଶା ବିତ-
ତାମହାନ୍ତଃତେଭିର୍ନୋଅଦ୍ୟ ସବିତୋତବିଷ୍ଣୁର୍ବିଶ୍ୱେମୁଞ୍ଚନ୍ତୁମ-
ରୁତଃ ସ୍ୱର୍କାଃ ସ୍ୱାହା ଇଦଂବରୁଣାୟ ସବିତ୍ରେବିଷ୍ଣବେବିଶ୍ୱେ-
ଭ୍ୟୋଦେବେଭ୍ୟୋମରୁଦ୍ଭ୍ୟଃ ସ୍ୱର୍କେଭ୍ୟଃ ଓଁ ଉଦୁତ୍ତମଂବ-
ରୁଣପାଶମସ୍ମଦବାଧମଂ ବିମଧ୍ୟମଁଶ୍ରଥାୟ ଅଥାବୟମାଦିତ୍ୟ
ବ୍ରତେତବା ନାଗସୋଅଦିତୟେସ୍ୟାମ ସ୍ୱାହା ଇଦଂବରୁଣାୟ
ଏତାଃସର୍ବପ୍ରାୟଶ୍ଚିତ୍ତ ସଂଜ୍ଞକାଃ ଓଁ ପ୍ରଜାପତୟେସ୍ୱାହା ଇଦଂ
ପ୍ରଜାପତୟେ ଇତିମନସାପ୍ରାଜାପତ୍ୟଂ ଓଁ ଅଗ୍ନୟେସ୍ୱିଷ୍ଟକୃ-
ତେସ୍ୱାହା ଇଦମଗ୍ନୟେସ୍ୱିଷ୍ଟକୃତେ ଇତି ସ୍ୱିଷ୍ଟକୃଦ୍ଧୋମଃ

---

ଇଦମଗ୍ନି ବରୁଣାଭ୍ୟାଂ ବୋଲି ପୁନର୍ବାର ଅଗ୍ନି ବରୁଣଙ୍କୁ ହୋ-
ମକରିବ । ଓଁ ଅୟାଶ୍ଚାଗ୍ନେ ମନ୍ତ୍ରପଢି ଇଦମଗ୍ନୟେ ବୋଲି ଅଗ୍ନିଙ୍କୁ
ହୋମକରିବ । ଓଁ ଯେତେଶତଂ ମନ୍ତ୍ରରେ ଇଦଂବରୁଣାୟ, ସବିତ୍ରେ
ବିଷ୍ଣବେ, ବିଶ୍ୱେଭ୍ୟୋ, ଦେବେଭ୍ୟୋ, ମରୁଦ୍ଭ୍ୟଃ, ସ୍ୱର୍କେଭ୍ୟଃ
ବୋଲି ବରୁଣାଦିଙ୍କୁ ହୋମକରିବ । ଓଁ ଉଦୁତ୍ତମଂ ବରୁଣପାଶ
ମନ୍ତ୍ରପଢି ଇଦଂ ବରୁଣାୟ ବୋଲି ବରୁଣଙ୍କୁ ହୋମକରିବ । ଏହ-
ମାନଙ୍କୁ ସର୍ବ ପ୍ରାୟଶ୍ଚିତ୍ତ ହୋମବୋଲିଯାଏ । ଓଁ ପ୍ରଜାପତୟେ ସ୍ୱାହା
ଇଦଂ ପ୍ରଜାପତୟେ ବୋଲି ମାନସିକ ପ୍ରାଜାପତ୍ୟ କରିବ ଓଁ
ଅଗ୍ନୟେ ସ୍ୱିଷ୍ଟକୃତେ ସ୍ୱାହା ଇଦମଗ୍ନୟେ ସ୍ୱିଷ୍ଟକୃତେ ବୋଲି
ସ୍ୱିଷ୍ଟକୃତଙ୍କୁ ହୋମକରିବ । ଏହାରନାମସ୍ୱିଷ୍ଟକୃତ ହୋମ । ତତ୍ପ-

ତତଃ ପଞ୍ଚଗବ୍ୟପ୍ରାଶନଂ ଆଚମନଂଚ ତତୋବ୍ରହ୍ମଣେଦକ୍ଷିଣାଦା-
ନଂ ଓଁ ଅଦ୍ୟଏତସ୍ମିନ୍ନୁପନୟନହୋମକର୍ମଣିକୃତାକୃତାବେ-
କ୍ଷଣେରୂପବ୍ରହ୍ମକର୍ମପ୍ରତିଷ୍ଠାର୍ଥମିଦଂ ପୂର୍ଣ୍ଣପାତ୍ରଂ ପ୍ରଜାପତିଦୈବତଂ
ଯଥାନାମଗୋତ୍ରାୟ ଯଥାନାମଶର୍ମଣେ ବ୍ରାହ୍ମଣାୟ ବ୍ରହ୍ମଣେ ଦକ୍ଷିଣାଂ-
ତୁଭ୍ୟମହଂସମ୍ପ୍ରଦଦେ ଇତିଦକ୍ଷିଣାଂଦଦ୍ୟାତ୍ ଓଁ ସ୍ୱସ୍ତୀତିପ୍ରତି-
ବଚନଂ ତତୋବ୍ରହ୍ମଗ୍ରନ୍ଥିବିମୋକଃ ତତଃ ଓଁ ସୁମିତ୍ରିୟାନ
ଆପଔଷଧୟଃ ସନ୍ତ୍ୱିତିପବିତ୍ରାଭ୍ୟାଂ ଜଲମାନୀୟତେନଶିରଃ
ସମ୍ମୃଜ୍ୟ ଓଁ ଦୁର୍ମିତ୍ରିୟାସ୍ତସ୍ମୈସନ୍ତୁ ଯୋସ୍ମାନ୍ ଦ୍ୱେଷ୍ଟିୟଂଚବୟଂ
ଦ୍ୱିଷ୍ମଃଇତ୍ୟୈଶାନ୍ୟାଂପ୍ରଣୀତାଂନ୍ୟୁବ୍ଜୀକରଣଂ ତତସ୍ତରଣ କ୍ର-
ମେଣବର୍ହିରୁତ୍ଥାପ୍ୟ ଘୃତେନାଭିଘାର୍ୟହସ୍ତେନୈବଜୁହୁୟାତ୍ ଓଁ
ଦେବାଗାତୁ ବଦୋଗାତୁଂ ବିତ୍ତାଗାତୁ ମିତମନସସ୍ପତଇମଂ-
ଦେବଯଜ୍ଞଂ ସ୍ୱାହାବାତେଧାଃ ସ୍ୱାହା ଇତିବର୍ହିର୍ହୋମଃ ତତଃ
ଆଚାର୍ଯଃ କୁମାରସ୍ୟାନୁଶାସନଂ କରୋତି ଓଁ ବ୍ରହ୍ମଚାର୍ଯସ୍ୟା-

---

ରେ ପଞ୍ଚଗବ୍ୟ ପ୍ରାଶନକରି ଆଚମନକରିବ । ତତ୍ପରେ ଓଁ ଅଦ୍ୟ ଏ
ତସ୍ମିନ୍ନୁପନୟନ ହୋମକର୍ମଣି,, ବାକ୍ୟପଢ଼ି ବ୍ରହ୍ମାଙ୍କୁ ଦକ୍ଷିଣାଦେବ ।
ବ୍ରହ୍ମା ତାହାଗ୍ରହଣକରି " ସ୍ୱସ୍ତୀତି ,, ବୋଲି ପ୍ରତିବଚନ କହିବେ ।
ତତ୍ପରେ ବ୍ରହ୍ମଗ୍ରନ୍ଥି ଫିଟାଇବ ଓଁ ସୁମିତ୍ରିୟାନ ମନ୍ତ୍ରପଢ଼ି ପବିତ୍ରଦ୍ୱ-
ୟରେ ଜଳ ଆଣିକରି ସେହିଜଳରେ ମସ୍ତକସେଚନ କରିବ ଓଁ
ଦୁର୍ମିତ୍ରିୟାସ୍ତସ୍ମୈ, ମନ୍ତ୍ରପଢ଼ି ଐଶାନ୍ୟ କୋଣରେ ପ୍ରଣୀତା ପାତ୍ରକୁ
ଅଧୋମୁଖକରି ରଖିବ । ତତ୍ପରେ ପରିସ୍ତରଣକ୍ରମେ କୁଶମାନଙ୍କୁ
ଉଠାଇ ଓଁ ଦେବାଗାତୁ ଏହିମନ୍ତ୍ରପଢ଼ି ଘୃତାକ୍ତ କରିତଃ କୁଶ ହୋ-
ମକରିବ । ତହିଁଉତ୍ତାରୁ ଆଚାର୍ଯ୍ୟ କୁମାରଙ୍କୁ ଅନୁଶାସନ ( ଶିକ୍ଷାଦାନ )
କରିବେ ।

" ଓଁବ୍ରହ୍ମଚାର୍ଯ୍ୟସି,, ଏହିପରି ଆଚାର୍ଯ୍ୟ କହିଲାପରେ " ଓଁ ଅସା-

ଚାର୍ଯ୍ୟଃ ଓଁ ଅସାନୀଦଂ ବ୍ରହ୍ମଚାରୀ ଓଁ ଅପୋଶାନ ଇତ୍ୟାଚାର୍ଯ୍ୟଃ ଓଁ ଅ-
ଶାନୀତି କୁମାର ଆହ ଓଁ କର୍ମକୁର୍ବିତ୍ୟାଚାର୍ଯ୍ୟଃ ଓଁ କରବାଣୀତି ମା-
ଣବକଃ ଓଁ ମାଦିବାସୁଷୁପ୍ଥା ଇତ୍ୟାଚାର୍ଯ୍ୟଃ ନସ୍ୱପାନୀତି କୁମାରଃ
ଓଁ ବାଚଂଯଚ୍ଛ ଇତ୍ୟାଚାର୍ଯ୍ୟଃ ଓଁ ଯଚ୍ଛାନୀତି କୁମାରଃ ଓଁ ସମିଧମା-
ଧେହି ଇତ୍ୟାଚାର୍ଯ୍ୟଃ ଓଁ ଆଦଧାନୀତି ମାଣବକଃ ଓଁ ଅପୋଶାନେ-
ତ୍ୟାଚାର୍ଯ୍ୟଃ ଓଁ ଶାନୀତି କୁମାରଃ ଅଥାଗ୍ନେରୁତ୍ତରତଃ ପ୍ରତ୍ୟ-
ଙ୍ମୁଖାୟୋପବିଷ୍ଟାୟାଚାର୍ଯ୍ୟ ଚରଣୋପସଂଗ୍ରହଣପୂର୍ବକମୁପସ-
ନ୍ନାୟାଚାର୍ଯ୍ୟଂ ସମୀକ୍ଷ୍ୟମାଣାୟାଚାର୍ଯ୍ୟଃ ସ୍ୱୟମପି ସମୀକ୍ଷିତାୟା-
ର୍ଣ୍ଣେ ନବାରତଶଂ ଖତ୍ରୂଯୀଦକ୍ଷିଣକର୍ଣ୍ଣାଂଶକେ ସାବିତ୍ରୀ ମନ୍ତ୍ର

ନୀତ" ବୋଲି ବ୍ରହ୍ମଚାରୀ କହିବେ । "ଓଁ ଅପୋଽଶାନ (ପିଅ) ଏହା ଆଚାର୍ଯ୍ୟ କହିଲାରୁ "ଓଁ ଅଶାନୀତି" ବୋଲି କୁମାର କହିବେ ଓଁ କର୍ମକୁରୁ ସ୍ନାନାଦି ସ୍ୱବର୍ଣ୍ଣାଶ୍ରମ ବିହିତ କର୍ମ କର ବୋଲି ଆଚାର୍ଯ୍ୟ କହିଲାରୁ ମାଣବକ "କରବାଣି" ବୋଲି କହିବେ ।

"ଓଁ ମାଦିବାସୁଷୁପ୍ଥାଃ" (ଦିବସରେ ଶୟନ ନକର) ଏ ଆଚାର୍ଯ୍ୟ ବଚନ ଶୁଣି "ନସ୍ୱପାମି" ବୋଲି କୁମାର କହିବେ । "ଓଁ ବାଚଂ ଯଚ୍ଛ" (ବଚନ କହ) ବୋଲି ଆଚାର୍ଯ୍ୟ କହିଲାରୁ "ଯଚ୍ଛାନି" ବୋଲି କୁମାର କହିବେ ଏବଂ "ସମିଧମାଧେହି" ଏହା ଆଚାର୍ଯ୍ୟଙ୍କଠାରୁ ଶୁଣି "ଓଁ ଆଦଧାମି" ବୋଲି ବ୍ରହ୍ମଚାରୀ କହିବେ । ପୂର୍ବବତ୍ ପୁନଶ୍ଚ "ଓଁ ଅପୋଽଶାନ" ଏହି ଆଚାର୍ଯ୍ୟ ବଚନ ଶୁଣି "ଓଁ ଅଶାନୀତି" ବୋଲି କୁମାର କହିବେ ଏଥିଉତ୍ତାରୁ କୁମାର ଅଗ୍ନିଙ୍କର ଉତ୍ତରପାର୍ଶ୍ୱରେ ପଶ୍ଚିମକୁ ମୁଖକରି ଆଚାର୍ଯ୍ୟଙ୍କଦ୍ୱାରା ଦୃଷ୍ଟ ହୋଇ ତାଙ୍କର ଚରଣଦ୍ୱୟ ଧାରଣ ଓ ତାଙ୍କୁ ସମ୍ୟକ୍ ଅବଲୋକନ କରିଥିବା ମାଣବକଙ୍କ ଦକ୍ଷିଣ କର୍ଣ୍ଣରେ ଆଚାର୍ଯ୍ୟ ମନ୍ତ୍ର ପ୍ରଦାନ କରିବେ ଅର୍ଥାତ୍ ଉପଦେଶ ଦେବେ । ମନ୍ତ୍ର ଉପଦେଶ ଦେଲାବେଳେ ତ୍ରିଶୀ, ଶିଖା ଦ୍ୱାର ଧ୍ୱନି ନିବାରଣ କରିବ । ସାବିତ୍ରି ପ୍ରଦାନର କ୍ରମ ଯଥା; ପ୍ରଥମବାର "ଓଁ

ମ୍ ଇତି ପ୍ରଥମାବୃତ୍ତୌ ଓଁ ଭୂର୍ଭୁବଃସ୍ୱଃ ତତ୍ସବିତୁର୍ବରେ
ଣ୍ୟଂ ଭର୍ଗୋଦେବସ୍ୟଧୀମହି ଧିୟୋୟୋନଃ ପ୍ରଚୋଦୟାତ୍
ଓଁ ପୁନର୍ବାଚୟିତ୍ୱଂ ଅର୍ଦ୍ଧର୍ଚ୍ଚଶଃ ବଦେଶଷଃ ମନ୍ତ୍ରା-
ନ୍ତଂଚ । ଓଁ କାର ବ୍ୟାହୃତି ପୂର୍ବକଂ ପ୍ରଥମଂ; ଅଥାତ୍
ଏକୈକପାଦଂ । ତଥାଦ୍ୱିତୀୟଂ ଅର୍ଦ୍ଧର୍ଚ୍ଚଶଃ । ତୃତୀୟେ କୃ-
ତ୍ସ୍ନଂ ସର୍ବାଂ ମନ୍ତ୍ରଂଚ ବ୍ରହ୍ମଚାରିଣା ସହ ପଠନ୍ । ଅଥ
ମାଣବକ ଆଚାର୍ଯ୍ୟଦକ୍ଷିଣତଃ ଅଗ୍ନିପଶ୍ଚିମୋପବିଷ୍ଟୋ
ଘୃତାକ୍ତଶୁଷ୍କନିଷିଦ୍ଧେତରେଂଧନେନ ଜୁହୁୟାତ୍ ତତଃ
ଓଁ ଅଗ୍ନେସୁଶ୍ରବଃ ସୁଶ୍ରବସଂମାଂକୁରୁ ଓଁ ଯଥା ତ୍ୱମଗ୍ନେ
ସୁଶ୍ରବଃ ସୁଶ୍ରବାଅସି ଓଁ ଏବଂମାଂ ସୁଶ୍ରବଃ ସୌଶ୍ରବସଂକୁରୁ
ଓଁ ଯଥାତ୍ୱମଗ୍ନେ ଦେବାନାଂ ଯଜ୍ଞସ୍ୟ ନିଧିପାଅସି ଓଁ ଏବମହଂ
ମନୁଷ୍ୟାଣାଂ ବେଦସ୍ୟ ନିଧିପୋଭୂୟାସଂ ତତଃ ପ୍ରଦକ୍ଷିଣମଗ୍ନିଂ

---

ତତ୍ସବିତୁର୍ବରେଣ୍ୟ, ଦ୍ୱିତୀୟ ଓଁଭୂର୍ଭୁବଃ ସ୍ୱଃ ତତ୍ସବିତୁର୍ବରେଣ୍ୟ
ଭର୍ଗୋଦେବସ୍ୟଧୀମହିଧିୟୋୟୋନଃ ପ୍ରଚୋଦୟାତ୍ । ଉକ୍ତ ରୀତରେ
ପ୍ରଦାନକରିବ ॥ ମନ୍ତ୍ରାର୍ଥ ॥
୧ ମରୁ ସପ୍ତବ୍ୟାହୃତି ସହିତ ଏକପାଦ, ୨ୟ ସେହିପରି ପ୍ରଣବବ୍ୟା-
ହୃତି ସହିତ ଅର୍ଦ୍ଧେକ ଅର୍ଦ୍ଧେକ, ତୃତୀୟ ପ୍ରଣବ ବ୍ୟାହୃତି ସହିତ
ସମସ୍ତକୁ ତାଙ୍କୁ ବ୍ରହ୍ମଚାରୀ ଏବ ଆଚାର୍ଯ୍ୟ ଅର୍ଥାତ୍ ଗୁରୁ ସହିତ ପଢିବେ ।
ଏଥିଉତ୍ତାରୁ ମାଣବକ ଅଗ୍ନିଙ୍କର ପଶ୍ଚିମ ଓ ଆଚାର୍ଯ୍ୟଙ୍କ ଦକ୍ଷିଣରେ
ବସି ନିଷିଦ୍ଧ କାଷ୍ଠଭିନ୍ନ ଅପର ଶୁଷ୍କକାଷ୍ଠ ପାଞ୍ଚଖଣ୍ଡି ଘୃତରେ ବୁଡାଇ
"ଓଁ ଅଗ୍ନେ ସୁଶ୍ରବଃ" ମନ୍ତ୍ରଠାରୁ "ଏବ ମହଂ ମନୁଷ୍ୟାଣାଂ" ପର୍ଯ୍ୟନ୍ତ
ପାଞ୍ଚଗୋଟିମନ୍ତ୍ର ପାଠକରି ଯଥାକ୍ରମେ ହୋମକରିବ । ତତ୍ପରେ
ଅଗ୍ନିଙ୍କୁ ପ୍ରଦକ୍ଷିଣକରି ଦକ୍ଷିଣ ହସ୍ତରେ ଜଳକୁ ଅଗ୍ନିରେ ସେଚନ
କରିବ । ଏବ ଠିଆହୋଇ ଅପଣାହସ୍ତରେ ଏକତ୍ରେ ପରିମିତ

